ଲେଖକଙ୍କର ପୂର୍ବ ପ୍ରକାଶିତ ପୁସ୍ତକ :

ଆମ ପ୍ରିୟ ଫୁଲ ଫଳ
ମଧୁମଣ୍ଡନ
ମଧୁଶାୟୀ ଶ୍ରୀ ନାରାୟଣ ଭକ୍ତି ସୁମନ
ନିବନ୍ଧ ବିନ୍ଦୁ ବିସର୍ଗ
ସାରସତ ସମୀକ୍ଷଣ
ସାରଳା ସମୀକ୍ଷଣ
ଭକ୍ତି ସୁମନ ଶତକ
ଶ୍ରୀଦୁର୍ଗା ଭକ୍ତି ସୁମନ ଶତକ
ସମର୍ପଣ ସୁମନ ଶତକ
ଭଜନ ସୁମନ ଶତକ
ଅମୃତ ବିନ୍ଦୁ
ଅମୃତ ଝର
ବେଦାନ୍ତ ଅଧ୍ୟୟନ ଓ ଅନ୍ୟାନ୍ୟ ପ୍ରବନ୍ଧ
ସୁବୋଧ ଜୀବନ ସରଣୀ
ନିବେଦନ ସୁମନ ଶତକ

# ଅମୃତ ତଟିନୀ

(ଅମୃତ ତରଙ୍ଗ-୩)

ଲେଖକ
ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା

ପ୍ରକାଶକ-କୃଷ୍ଣା

# ଅମୃତ ତଟିନୀ

ଲେଖକ- ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା
ବାରବାଟୀ, ଧର୍ମଶାଳା, ଯାଜପୁର, ଫୋନ୍: ୯୮୬୧୭୨୨୨୫୮

ପ୍ରକାଶକ : **କୃଷ୍ଣା**
ଜାରକା, ଧର୍ମଶାଳା, ଯାଜପୁର, ଫୋନ୍: ୯୨୩୮୫୧୯୮୧୫

ପ୍ରଥମ ସଂସ୍କରଣ : ୦୫/୦୯/୨୦୨୨ / ବିଜୟା ଦଶମୀ
ମୂଲ୍ୟ : ଟ୧୨୧/

## Amruta Tatinee

BY

Sushanta Kumar Panda , Reader
Barabati, Dharmasala, Jajpur, Ph: 9861722258

**Published by: KRUSNA**
Jaraka, Dharamasala, Jajpur, Ph: 9238519815
E-mail. krusnadtp@gmail.com

**First Edition : 05/09/2022 / Bijaya dasamee**
Price **Rs. 121/**

**ISBN. 9789393178107**



ଉତ୍ସର୍ଗ.....

ଶ୍ୱଶୂର, ଶାଶୁ
ଶ୍ରୀ ଗୌରୀଶ୍ୟାମ ଦାଶ
ଶ୍ରୀମତୀ ସରସ୍ୱତୀଦେବୀ
ଙ୍କ
କରକମଳରେ ସମର୍ପିତ



# ସ୍ୱଗତୋକ୍ତି :

ଜଗତ ବିସ୍ମୟ କର, ତହୁଁ ଅଧିକ ବିସ୍ମୟ ମାନବ ଜୀବନ । ନିଜ ଭିତରେ ଥିବା ଗୁଣ, ସଂସ୍କାର ଆଧାରରେ ମନୁଷ୍ୟ ନିଜ ବିଚାର ତଥା ଜଗତକୁ ଦେଖିଥାଏ । ଜୀବନରେ ଚତୁର୍ବର୍ଗ ପୁରୁଷାର୍ଥ ଧର୍ମ- ଅର୍ଥ- କାମ- ମୋକ୍ଷ ମଧ୍ୟରୁ ପ୍ରଥମ ତିନିଗୋଟି (ପ୍ରାୟ) ସମସ୍ତଙ୍କ ଦ୍ୱାରା କର୍ତ୍ତବ୍ୟ, ସାଧନ ଯୋଗ୍ୟ । ଅତଏବ ମନୁଷ୍ୟ ଏହି ତିନିଗୋଟିକୁ ପ୍ରାଧାନ୍ୟ ଦେଇ ସମଗ୍ର ଜୀବନ ବିତାଇ ଦେଇଥାଆନ୍ତି । ଏ ସକଳ ସିଦ୍ଧି ପାଇଁ ଅନ୍ୟ ସାଧନ ସହିତ ଜ୍ଞାନର ପ୍ରୟୋଜନ ଏକାନ୍ତ ଜରୁରୀ । ତେଣୁ ନିଜର ଦୃଷ୍ଟିକୋଣ ଅନୁସାରେ ବ୍ୟକ୍ତି ଜଗତକୁ ସେହି ଦିଗରେ ଦର୍ଶନ କରିବାର ପ୍ରୟାସ କରୁଥିବାର ଦେଖାଯାଏ । ଯେପରି କେହି ଜୀବନ ବା ଜଗତକୁ କାମ(କାମନା)ର ପୂର୍ତ୍ତିକରଣ ବୋଲି ବିଚାରି ତାହା ପ୍ରାପ୍ତି ଦିଗରେ ସମଗ୍ର ଜୀବନ ଧାବିତ ହୋଇଥାଆନ୍ତି । ସେହିପରି ଅର୍ଥ ସର୍ବସ୍ୱ ବା ଅର୍ଥ ବିଚାର, ସମଗ୍ରୀ ଏକତ୍ର କରିବା । ଏ ଶରୀରକୁ ମୁକ୍ତିର ସାଧନ ଭାବେ ପ୍ରତି ମୁହୂର୍ତ୍ତରେ ସତ୍‌କର୍ମ, ସଦାଚାର ବିଚାର ଗ୍ରହଣ ପୂର୍ବକ ସେହି 'ଅସୀମ'ଙ୍କ ଦିଗକୁ ନିଷ୍କାମ କର୍ମ, ଅଚଳାଭକ୍ତି, ତତ୍ତ୍ୱଜ୍ଞାନ ସାଧନାରେ ଲାଗିରହିଥାଆନ୍ତି ।

ସାଂପ୍ରତିକ ସମାଜରେ ଅର୍ଥ ଏବଂ କାମ ପ୍ରାୟତଃ ମନୁଷ୍ୟମାନଙ୍କର ଧ୍ୟେୟ ହୋଇଥିବା ଅନୁଭବ୍ୟ । ଅତଏବ ଧର୍ମ ବିରହିତ ଅର୍ଥ- କାମ  କେବଳ ଭୋଗ ସର୍ବସ୍ୱ ହୋଇଥିବା ହେତୁ ପରିଣାମରେ ପୀଡ଼ା, କଷ୍ଟ, ସନ୍ତାପ ଦାୟୀ ହୋଇଥାଏ । ବାହ୍ୟତଃ ବ୍ୟକ୍ତି ଖୁବ୍ ସଂପନ୍ନ, ଉନ୍ନତ କୋଠା, ବାଡ଼ି, ଗାଡ଼ି ଆଦି ଉପଭୋଗ କରୁଛନ୍ତି, ଏଣୁ ସେ ନିଶ୍ଚୟ ଭାଗ୍ୟବାନ୍ । କିନ୍ତୁ ତାଙ୍କ ଅନ୍ତରରେ ପ୍ରତି ମୁହୂର୍ତ୍ତରେ ଜ୍ୱଳନ, ଉଦ୍‌ବେଳ, ଦ୍ୱନ୍ଦ୍ୱ, ଅଶାନ୍ତି ଘେରି ରହିଛି । ତାହା ଅନ୍ୟମାନେ ଜାଣିବାର ଉପାୟ କାହିଁ ? ସ୍ୱୟଂ ସେହି ଚାପ ମଧ୍ୟରୁ ମୁକୁଳିବାର ଉପାୟ ନିର୍ଣ୍ଣୟ କରିବାରେ ଅସମର୍ଥ । ଏଥିପାଇଁ ଶାସ୍ତ୍ରକାରବୃନ୍ଦ ନାନା ଦୃଷ୍ଟାନ୍ତ ଆଖ୍ୟାନ ଆଖ୍ୟାୟିକା ମାଧ୍ୟମରେ ସୁଗମ ଦିଗନ୍ତ ଦର୍ଶନର ସ୍ୱର୍ଣ୍ଣିମ ସରଣୀ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଅଛନ୍ତି ।

ଅନ୍ୟ ଏକ ବିଚାର ହେଲା ସଂପ୍ରତି କାହା ପାଖରେ ଆଉ ସବୁ ଥାଇ ପାରେ ମାତ୍ର ଜୀବନର ସାରତତ୍ତ୍ୱ ବୁଝିବା ପାଇଁ ସମୟର ଅଭାବ । ସୁତରାଂ ଖୁବ୍ କମ୍ ସମୟ ମଧ୍ୟରେ ବେଦ, ପୁରାଣ, ଶାସ୍ତ୍ରର ବାଣୀକୁ ଅତି ସଂକ୍ଷେପରେ ମାଳାଟିଏ ଗୁନ୍ଥିବାର ପ୍ରୟାସ କରାଯାଇଛି । ପୂର୍ବବର୍ତ୍ତୀ 'ଅମୃତବିନ୍ଦୁ', 'ଅମୃତଝର' ଧାରାରେ ଏହା ତୃତୀୟ ସଂପୂଟ ।

ପ୍ରିୟ ପାଠକେ ! ଉକ୍ତ ପୁସ୍ତକରୁ ଜୀବନ ତତ୍ତ୍ୱ ସଂପର୍କିତ ମାର୍ଗଦର୍ଶନ ଯତ୍ କିଞ୍ଚିତ କରିପାରିଲେ ଶ୍ରମ ସାର୍ଥକ ହେବ । ପୁନଃ ଅନେକତ୍ର ଋଷି ବାକ୍ୟକୁ ଆଧାର କରି ଉପସ୍ଥାପନ କରାଯାଇ ଥିବାରୁ ସେ ମହାନୁଭବ ସିଦ୍ଧମାନଙ୍କ ନିକଟରେ କୃତାଞ୍ଜଳି ପୂଟରେ କୃତଜ୍ଞତା ଜ୍ଞାପନ କରୁଛି । ଉପସ୍ଥାପନା କ୍ଷେତ୍ରରେ ତ୍ରୁଟି ବିଚ୍ୟୁତ ପାଇଁ କ୍ଷମାପ୍ରାର୍ଥୀ ଏବଂ ଶ୍ରେୟ ସେହିମାନଙ୍କର । ଜୟ ଜଗନ୍ନାଥ ।

**ବିନୀତ ଲେଖକ**



# ମୋ' ଦୃଷ୍ଟିରେ

ଜୀବନ ଓ ଜଗତ ଚିର ରହସ୍ୟମୟ । କାହିଁ କେଉଁ ପ୍ରାଚୀନ କାଳରୁ ଉଭୟ ଜୀବନ ଓ ଜଗତର ସୂକ୍ଷ୍ମ ତତ୍ତ୍ୱକୁ ମନୁଷ୍ୟ ଉନ୍ମୋଚନ କରିବାର ପ୍ରୟାସ ଜାରି ରଖିଥିଲେ ମଧ୍ୟ ଏକ ନିର୍ଦ୍ଦିଷ୍ଟ କେନ୍ଦ୍ରବିନ୍ଦୁରେ ଉପନିତ ହେଲା ଭଳି ମନେହୁଏ ନାହିଁ । ମୁନି ଋଷିମାନେ ଏ ଦିଗରେ ନିଜ ଜୀବନକୁ ସଂପୂର୍ଣ୍ଣ ବିନିଯୋଗ କରି ଜନ୍ମ ରହସ୍ୟ ଓ ଜଗତର ତତ୍ତ୍ୱ ଖୋଜିବାର ପ୍ରୟାସ କରିଛନ୍ତି ଏବଂ ତାଙ୍କ ଅନୁଭୂତିର ସ୍ୱରଲିପିକୁ ଜୀବଜଗତର କଲ୍ୟାଣ ନିମନ୍ତେ ଉତ୍ସର୍ଗ କରି ଦେଇଯାଇଛନ୍ତି । ସେହି ମହାତ୍ମାମାନଙ୍କର ଆତ୍ମ ନୈବିଦ୍ୟ ହିଁ ଜୀବନକୁ ଏକ ବୃହତ୍ତର ଶାନ୍ତିକାମୀ ପଥରେ ଉପନିତ ହେବାର ମାର୍ଗ ଦେଖାଇଛି ।

ଆମେ ଯେତେ ଯେତେ ଆଧୁନିକ ହେଉଛେ, ସେତେ ସେତେ ମେସିନ୍ ସଭ୍ୟତାର କବଳରେ ନିଜକୁ କବଳିତ କରୁଛେ । ତହିଁରୁ ଅଧିକା ଆମର ଭୁଞ୍ଜିବା ଓ ଭୋଗିବାର ନିଶା ବଢ଼ିବଢ଼ି ଚାଲିଛି । ସେହି ଭୋଗବାଦ ହିଁ ସାଂପ୍ରତିକ ସମୟରେ ମଣିଷ ନିମନ୍ତେ ଅଶାନ୍ତିର କାରଣ । କଂକ୍ରିଟ ଜଙ୍ଗଲ ଭିତରେ ଆଜିର ମଣିଷ ଅସ୍ତବ୍ୟସ୍ତ । ହାତ

ପାଆନ୍ତାରେ ସମସ୍ତ ସୁବିଧାକୁ ହାସଲ କରୁଥିବା ମଣିଷର ଅଶାନ୍ତି ଦିନକୁ ଦିନ ଉଗ୍ରରୂପ ଧାରଣ କରୁଛି । ବଢୁଛି ପାରିବାରିକ ଦ୍ୱନ୍ଦ୍ୱ, କଳହ ଓ ହିଂସା । ଏ ସବୁରୁ ମୁକ୍ତି ପାଇବା ନିମନ୍ତେ ଆଧ୍ୟାତ୍ମିକ ମନନଶୀଳନର ଆବଶ୍ୟକତା ରହିଅଛି । ଆମ ବେଦ, ଉପନିଷଦ ପୁରାଣ ଆଦିରେ ଥିବା ନୀତିନିଷ୍ଠ ଅନୁଚିନ୍ତାକୁ ଏବେ ଗ୍ରହଣ କରିବାର ବେଳ ଆସିଛି । ଏବେର କର୍ମବହୁଳ ଜୀବନଧାରାରେ ତା'ର ସଂକ୍ଷିପ୍ତ ସାରକୁ ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡା ମହୋଦୟ ଆଲୋଚ୍ୟ ପୁସ୍ତକରେ ଚିତ୍ରଣ କରିଅଛନ୍ତି । ଏହା ପୂର୍ବରୁ ତାଙ୍କର ଏ ସମ୍ବନ୍ଧିତ ଦୁଇଖଣ୍ଡ ପୁସ୍ତକ 'ଅମୃତ ବିନ୍ଦୁ', 'ଅମୃତ ଝର'ର ଚିନ୍ତନକୁ ପାଠକ ଶ୍ରଦ୍ଧାର ସହ ଗ୍ରହଣ କରିଅଛନ୍ତି । ଆଲୋଚ୍ୟ ପୁସ୍ତକଟିରେ ମାନବ ଜୀବନର ଲକ୍ଷ୍ୟ, ସ୍ଥିତି ଓ ଉଦ୍ଦେଶ୍ୟ ସମ୍ବନ୍ଧରେ ଆମ ବେଦବେଦାନ୍ତ ଓ ପୁରାଣରେ ଥିବା ନୀତିନିଷ୍ଠ ଓ ନୈତିକ ଚିନ୍ତନକୁ ଦର୍ଶାଯାଇଛି । ଶ୍ରୀଯୁକ୍ତ ପଣ୍ଡାଙ୍କ ଅନୁଶୀଳନର ଗଭୀରତା ଏଥିରୁ ସ୍ପଷ୍ଟ ବାରି ହୋଇପଡ଼େ । ବହୁ ଶାସ୍ତ୍ରକୁ ସେ ଶ୍ରଦ୍ଧାସହ ମନନଶୀଳ କରି ତା'ର ଉପାଦେୟ ତଥ୍ୟ ଓ ତତ୍ତ୍ୱକୁ ସାଂପ୍ରତିକ ସମୟରେ ପ୍ରାସଙ୍ଗିକ ବୋଲି ଅନୁଭବ କରି ଏହି ପୁସ୍ତକରେ ଲିପିବଦ୍ଧ କରିଅଛନ୍ତି । ବହୁତଥ୍ୟ ରହିଛି ବହିଟିରେ, ଯାହାକୁ ଏବେର ପିଢ଼ି ନିହାତି ଜାଣିବା ଜରୁରୀ । ୧୦୮ ଗୋଟି ପ୍ରସଂଗକୁ ଶ୍ରୀଯୁକ୍ତ ପଣ୍ଡା ଏହି ପୁସ୍ତକରେ ସ୍ଥାନିତ କରିଛନ୍ତି । ଗୁଣାତ୍ମକ ମାନ ଦୃଷ୍ଟିରୁ ଏହି ଲେଖା ଗୁଡ଼ିକ ବହୁ ଉପାଦେୟ ଓ ନୀତିନିଷ୍ଠ ହୋଇପାରିଛି । ତାଙ୍କ ଲେଖନୀ ଓ ଚିନ୍ତନ ଆହୁରି ଲୋକାଭିମୁଖୀ ହେଉ ଜଗତର ନାଥ ଜଗନ୍ନାଥଙ୍କ ନିକଟରେ ଏତିକି ପ୍ରାର୍ଥନା ।

**ଅଧ୍ୟକ୍ଷ**

**ବ୍ରହ୍ମ ବରଦା ମହାବିଦ୍ୟାଳୟ**

**ବରଦା ବିହାର, ଯାଜପୁର**

# ସୂଚୀପତ୍ର

ନବଦୁର୍ଗା

# ଶ୍ରୀଶ୍ରୀ ଗୁରୁଦେବାଷ୍ଟକମ୍

ସଂସାର ଦାବାନଳ ଲୀଢ଼ଲୋକ,
ତ୍ରାଣାୟ କାରୁଣ୍ୟ ଘନାଘନତ୍ୱଂ ।
ପ୍ରାପ୍ତସ୍ୟ କଲ୍ୟାଣ ଗୁଣାର୍ଣ୍ଣବସ୍ୟ,
ବନ୍ଦେ ଗୁରୋଃ ଶ୍ରୀଚରଣାରବିନ୍ଦମ୍ ।।୧।।

ମହାପ୍ରଭୋଃ କୀର୍ତ୍ତନ ନୃତ୍ୟଗୀତ,
ବାଦିତ୍ୟ ବାଦ୍ୟ ନ୍ମନସୋ ରସେନ ।
ରୋମାଞ୍ଚକମ୍ପା ସ୍ତତରଂଗଭାଜୋ,
ବନ୍ଦେ ଗୁରୋଃ ଶ୍ରୀଚରଣାରବିନ୍ଦମ୍ ।।୨।।

ଶ୍ରୀବିଗ୍ରହାରାଧନ ନିତ୍ୟନାନା,
ଶୃଙ୍ଗାରତନ୍ମନ୍ଦିର ମାର୍ଜ୍ଜନାଦୌ ।
ଯୁକ୍ତସ୍ୟ ଭକ୍ତାଣ୍ଡ ନିପୁଞ୍ଜତୋପି,
ବନ୍ଦେ ଗୁରୋଃ ଶ୍ରୀଚରଣାରବିନ୍ଦମ୍ ।।୩।।

ଚତୁର୍ବିଧଶ୍ରୀଭଗବତ୍ ପ୍ରସାଦ,
ସ୍ୱାଦନ୍ନ ତୃପ୍ତାନ୍ ହରିଭକ୍ତ ସର୍ବାନ୍ ।
କୃତ୍ୱୈବ ତୃପ୍ତିଂ ଭଜତଂ ସଦୈବ,
ବନ୍ଦେ ଗୁରୋଃ ଶ୍ରୀଚରଣାରବିନ୍ଦମ୍ ।।୪।।

ଶ୍ରୀରାଧିକା ମାଧବଯୋରପାର,
ମାଧୁର୍ଯ୍ୟ ଲୀଳା ଗୁଣରୂପ ନାମ୍ନା ।
ପ୍ରତୀକ୍ଷଣ ସ୍ୱାଦନ ଲୋଲୁପସ୍ୟ,
ବନ୍ଦେ ଗୁରୋଃ ଶ୍ରୀଚରଣାରବିନ୍ଦମ୍ ।।୫।।

ନିକୁଞ୍ଜ ଯୂନୋ ରତିକେଳି ସିଦ୍ଧୈ,
ର୍ଯାଯାଳିଭି ର୍ଯୁକ୍ତିରପେକ୍ଷଣୀୟା ।
ତ୍ରାତାତିଦ୍ରାକ୍ଷା ଦତିବଲ୍ଲଭାସ୍ୟ,
ବନ୍ଦେ ଗୁରୋଃ ଶ୍ରୀଚରଣାରବିନ୍ଦମ୍ ।।୬।।

ସାକ୍ଷାର୍ଦ୍ଧରିତ୍ୱେନ ସମସ୍ତଶାସ୍ତ୍ରୈ,
ରୁକ୍ତସ୍ତଥା ଭାବ୍ୟତ ଏବସଭି ।
କିନ୍ତୁ ପ୍ରଭୋର୍ଯ୍ୟ ପ୍ରିୟ ଏବତସ୍ୟ
ବନ୍ଦେ ଗୁରୋଃ ଶ୍ରୀଚରଣାରବିନ୍ଦମ୍ ।।୭।।

ଯସ୍ୟ ପ୍ରସାଦାଦ୍ ଭଗବତ୍ ପ୍ରସାଦୋ,
ଯସ୍ୟ ପ୍ରସାଦାନ୍ ନ ଗତିଃ କୁତୋଽପି ।
ଧ୍ୟାୟେସ୍ତୁବଂ ସ୍ତସ୍ୟ ଯଶସ୍ତ୍ରିସନ୍ଧ୍ୟଂ,
ବନ୍ଦେ ଗୁରୋଃ ଶ୍ରୀଚରଣାରବିନ୍ଦମ୍ ।।୫।।

ଶ୍ରୀମଦ୍ ଗୁରୋରଷ୍ଟକମେତଦୁଚ୍ଚୈ,
ବ୍ରାହ୍ମେ ମୁହୂର୍ତ୍ତେ ପଠତିପ୍ରଯତ୍ନାତ୍ ।
ଯସ୍ତେନ ବୃନ୍ଦାବନନାଥ ସାକ୍ଷାତ୍,
ସବୈବ ଲଭ୍ୟା ଜନୁଷୋଽନ୍ତଏବ ।।୯।।

ଇତି ଗୁରୁଦେବାଷ୍ଟକମ୍ ସମ୍ପୂର୍ଣ୍ଣଂ ।।

# ୧. ଚାରି ପୁରୁଷାର୍ଥ

ମାନବ ଜୀବନର ଚାରିଗୋଟି ପୁରୁଷାର୍ଥ- ଧର୍ମ, ଅର୍ଥ, କାମ, ମୋକ୍ଷ । ଏଥିମଧ୍ୟରୁ ତିନିଗୋଟି ଲୋକଙ୍କ ଜୀବନରେ ସାଧ୍ୟ ପୁରୁଷାର୍ଥ । ଏହା ସାମାଜିକ ପୁରୁଷାର୍ଥ । ଚତୁର୍ଥ ପୁରୁଷାର୍ଥ ନିଜର ଏବଂ ଆଲୌକିକ । ଏହା ପରମ ପୁରୁଷାର୍ଥ । ପରମର ଅର୍ଥ 'ମୂଲ୍ୟ' ବା 'ମୁଖ୍ୟ' ନୁହେଁ । ଏହା ସର୍ବୋପରି, ସର୍ବୋଚ୍ଚ ଅର୍ଥାତ୍ ଏହା ଉପରକୁ ଆଉ କିଛି ନାହିଁ । ମୋକ୍ଷ ସାମାଜିକ ଜୀବନର ଲକ୍ଷ୍ୟ ନୁହେଁ । ଜୀବନର ଲକ୍ଷ୍ୟ ଯେଉଁ ଜ୍ଞାନରେ ଅଧି ପ୍ରାମାଣିକ କରାଯାଇଥାଏ, ଯାହା ସମସ୍ତ ଜୀବନ ଲକ୍ଷ୍ୟର ଯଥାର୍ଥ ଓ ପରମାର୍ଥକୁ ପ୍ରତିପାଦିତ କରିଥାଏ, ତାହା ହିଁ ପରମ ପୁରୁଷାର୍ଥ । ଏଣୁ ଯେପରି ଅଧିକାଂଶ ବ୍ୟକ୍ତି କୌଣସି କାର୍ଯ୍ୟ, କ୍ରୀଡ଼ା ଅଥବା (ବୃତ୍ତି) ବ୍ୟବସାୟରେ ସର୍ବୋଚ୍ଚ ସ୍ଥାନରେ ପହଞ୍ଚି ପାରନ୍ତି ନାହିଁ, ଯଦିଓ ଶୀର୍ଷରେ ପହଞ୍ଚିବା ପାଇଁ କାହାରିକୁ ମନା କରାଯାଇ ନାହିଁ ଏବଂ ପ୍ରତ୍ୟେକ ବ୍ୟକ୍ତି ସର୍ବୋଚ୍ଚ ହେବାକୁ ପ୍ରୟାସ କରିଥାଆନ୍ତି ଏହାର ଅଧିକାର ରହିଛି ଏବଂ କର୍ତ୍ତବ୍ୟ ମଧ୍ୟ କରିଥାଆନ୍ତି ତଦନୁରୂପ ସର୍ବୋଚ୍ଚ ବା ପରମ ପୁରୁଷାର୍ଥ ମୋକ୍ଷ ପ୍ରତ୍ୟେକ ବ୍ୟକ୍ତିଙ୍କ ପାଇଁ ସୁଲଭ ନୁହେଁ କିମ୍ବା ହୋଇ ପାରିବନାହିଁ । ମୋକ୍ଷ ମନୁଷ୍ୟର ସାମାନ୍ୟ ଧର୍ମ ନୁହେଁ, ଏହା ବିଶିଷ୍ଟ ଧର୍ମ, ପରମଧର୍ମ ।

ମନୁସ୍ମୃତିରେ ସ୍ପଷ୍ଟଭାବେ କୁହାଯାଇଛି ଯେ ସମସ୍ତ ମନୁଷ୍ୟଙ୍କ ପାଇଁ ତିନି ପୁରୁଷାର୍ଥ ରହିଛି- ଧର୍ମ, ଅର୍ଥ ଏବଂ କାମ, ବସ୍ତୁତଃ ମୋକ୍ଷ ମନୁଷ୍ୟମାନଙ୍କର ସାମାନ୍ୟ ଧର୍ମ ବା ସର୍ବମାନ୍ୟ ଲକ୍ଷ୍ୟ କେବେ ହୋଇନପାରେ ।

**ଧର୍ମାର୍ଥୈ ବୁଜେତେ ଶ୍ରେୟଃ, କାମାର୍ଥ ଧର୍ମ ଏବଚ୍,**
**ଅର୍ଥ ଏବେହ ବା ଶ୍ରେୟଃ ତ୍ରିବର୍ଣ୍ଣ ଇତି ତୁ ସ୍ଥିତିଃ ।** (ମନୁସ୍ମୃତି)

କିଛି ବ୍ୟକ୍ତିଙ୍କ ମତ ହେଉଛି ଯେ ଧର୍ମ ଏବଂ ସାଧନା ଶ୍ରେୟସ୍କର, କିଛି ବ୍ୟକ୍ତିଙ୍କ ଅନୁସାରେ କାମ ଓ ଅର୍ଥ, ଅପର କେତେକଙ୍କ ମତରେ କେବଳ ଧର୍ମ । ଏ ସଂବନ୍ଧରେ ସମ୍ୟକ ସ୍ଥିତି ହେଉଛି ଯେ ଧର୍ମ, ଅର୍ଥ ଏବଂ କାମ ଏ ତିନିହେଁ (ତ୍ରିବର୍ଗ) ଶ୍ରେୟସ୍କର ।



# ୨. ଆୟୁର୍ବେଦ ଚିକିତ୍ସା

ପ୍ରୟୋଜନ-ପ୍ରୟୋଜନ ଚାସ୍ୟ ସ୍ୱସ୍ଥସ୍ୟ ସ୍ୱାସ୍ଥ୍ୟରକ୍ଷଣମ୍

ଆତୁରସ୍ୟ ବିକାର ପ୍ରଶମନଂ ଚ ।

(ଚରକ ସଂହିତା, ୩୦/୨୬)

(ସୁସ୍ଥ ସ୍ୱାସ୍ଥ୍ୟ ରକ୍ଷା କରିବା ଏବଂ ଆତୁର (Person suffering from ailments) ବିକାରକୁ ଦୂର କରି ସୁସ୍ଥ କରିବା ।)

ସମସ୍ତ ଚିକିତ୍ସା ପଦ୍ଧତି ମଧ୍ୟରୁ ଆୟୁର୍ବେଦ ଚିକିତ୍ସା ବିଶ୍ୱର ସର୍ବପ୍ରାଚୀନ ଏବଂ ବୈଜ୍ଞାନିକ ଚିକିତ୍ସା ପଦ୍ଧତି । ସମଗ୍ର ମାନବ ଜାତିର କଲ୍ୟାଣକାରୀ । ଏହି ମହାନ ଉଦ୍ଦେଶ୍ୟକୁ ସମ୍ମୁଖରେ ରଖି ହଜାର ବର୍ଷ ପୂର୍ବରୁ ଆମର ପୂର୍ବଜ ମହର୍ଷି ଧନ୍ୱନ୍ତରୀ, ଚରକ, ସୁଶ୍ରୁତ ଆଦି ବ୍ରହ୍ମର୍ଷିଙ୍କ ଦ୍ୱାରା ଆୟୁର୍ବେଦ ଚିକିତ୍ସା ସମ୍ବନ୍ଧିତ ଗ୍ରନ୍ଥରାଜି ରଚିତ । କିନ୍ତୁ ବିଦେଶୀ ଷଡ଼ଯନ୍ତକାରୀଙ୍କ ଏବଂ ଲୋଭୀ ବ୍ୟବସାୟିକ ମାନସିକତା ତଥା ସରକାରଙ୍କ ଭୁଲ ନୀତି କାରଣରୁ ଏହା ବିଲୁପ୍ତ ହେବାକୁ ଯାଇଥିଲା ।

ଏବେ ସମୃଦ୍ଧ ସନ୍ନ୍ୟାସ ଏବଂ ଋଷି ପରଂପରା ଆଧାରିତ ସ୍ୱାମୀ ରାମଦେବ ଏହାର ପୁନରୁତ୍ଥାନର ସଂକଳ୍ପ ନେଇ ଯାତ୍ରା ଆରମ୍ଭ କରିଛନ୍ତି । ଆୟୁର୍ବେଦ ଚିକିତ୍ସାକୁ ବିଶ୍ୱବ୍ୟାପୀ ସମ୍ମାନ ମିଳିଛି । ଆଜି ସାରା ବିଶ୍ୱରେ ଆମର ଏହି ମହାନ ଆୟୁର୍ବେଦ ଚିକିତ୍ସା ଏବଂ ଯୋଗ ବିଦ୍ୟା ଉପରେ ରିସର୍ଚ୍ଚ ଚାଲିଛି । ଆଦର୍ଶ ଚିକିତ୍ସକଙ୍କ ସମ୍ବନ୍ଧରେ ମହର୍ଷି ଚରକଙ୍କ ଉକ୍ତି ଦେଖନ୍ତୁ-

ଭିଷଗ ବ୍ୟାତୁରାନ୍ ସର୍ବାନ ସ୍ୱସୁତାନିବ ଯତ୍ନବାନ

ଆବାଧେ ଭୟୋହି ସଂରକ୍ଷେ ଦିଚ୍ଛନ ଧର୍ମ ମନୁତମମ ।

(ଚ଼ ଚି.୧-୪/୫୬)

ଅର୍ଥାତ୍ ବୈଦ୍ୟଙ୍କ ଏହା ପରମ କର୍ତ୍ତବ୍ୟ ଯେ ସେ ସମସ୍ତ ରୋଗୀଙ୍କୁ ନିଜର ପୁତ୍ର ତୁଲ୍ୟ ଦେଖିବାର ଧର୍ମ ଧାରଣ କରନ୍ତୁ, କାରଣ ଏହା ହିଁ ତାଙ୍କ ଶ୍ରେଷ୍ଠ ଧର୍ମ । ଚିକିତ୍ସା କାଳରେ ଅର୍ଥ ପାଇଁ କିମ୍ବା ଅନ୍ୟ କୌଣସି ମନୋରଥ ସିଦ୍ଧି ପାଇଁ ମାନସିକତା ନରଖି କେବଳ ମନୁଷ୍ୟର ପ୍ରାଣରକ୍ଷା ଦୃଷ୍ଟିରୁ ପ୍ରବୃତ୍ତ ହେବା ଚିକିତ୍ସକ ସମାଜରେ ଶ୍ରେଷ୍ଠ ହୋଇଥାଆନ୍ତି । ଏହି ପ୍ରକାର ଚିକିତ୍ସକଙ୍କୁ ଅକ୍ଷର ସ୍ଥାନ ପ୍ରାପ୍ତି ହୋଇଥାଏ ।

◆◆◆

# ୩. ସାମାନ୍ୟ ଧର୍ମ ଓ ବିଶେଷ ଧର୍ମ

ଭାରତୀୟ ସଂସ୍କୃତିର ମୂଳତତ୍ତ୍ୱ ହିଁ ମାନବ ଧର୍ମର ବୋଧ । ତଦନୁସାରେ ମନୁଷ୍ୟମାନଙ୍କ ଦ୍ୱାରା ଅନିବାର୍ଯ୍ୟ ରୂପେ ପାଳନ ଯୋଗ୍ୟ କିଛି ସାର୍ବଭୌମ ନିୟମ ରହିଛି, ତାହାକୁ ମାନବଧର୍ମ ବା ସାମାଜିକ ଧର୍ମ କୁହାଯାଏ । ଯାହା ସମସ୍ତଙ୍କ ଦ୍ୱାରା ପାଳନୀୟ କର୍ତ୍ତବ୍ୟ ତାହା ସାର୍ବଭୌମ ଧର୍ମ, ସାମାଜିକ ଧର୍ମ ବା ସାମାନ୍ୟ ଧର୍ମଭାବେ କଥିତ । ସେହି ଦୃଷ୍ଟିରୁ ଅହିଂସା, ସତ୍ୟ, ଅସ୍ତେୟ, ପବିତ୍ରତା ଏବଂ ସଂଜମ ସାର୍ବଭୌମ ଧର୍ମ । ବିଷ୍ଣୁ ଧର୍ମ ସୂତ୍ର ଆଧାରରେ କ୍ଷମା, ସତ୍ୟ, ଅସ୍ତେୟ, ପବିତ୍ରତା, ଦାନ, ଇନ୍ଦ୍ରିୟ ନିଗ୍ରହ, ଅହିଂସା, ଦୟା, ସରଳତା, ନିଶ୍ଚଳ ସ୍ୱଭାବ, ଲୋଭ ଶୂନ୍ୟତା, ଈର୍ଷ୍ୟାନ୍ୟୁନତା ଆଦି ସାମାନ୍ୟ ଧର୍ମ । ମହାଭାରତ ଶାନ୍ତି ପର୍ବରେ ସତ୍ୟ ଭାଷଣ, ଅକ୍ରୋଧ, କ୍ଷମା, ନିଜ ପତ୍ନୀଠାରୁ ସନ୍ତନ ସୃଷ୍ଟି, ପବିତ୍ରତା, ଋଜୁତା, ଅଦ୍ରୋହ, ନ୍ୟାୟ ଏବଂ ଅଧୀନସ୍ଥର ସମ୍ୟକ ପୋଷଣ ଏହି ନଅଗୋଟି ସାମାନ୍ୟ ଧର୍ମ । ଏଥି ସହିତ ନିଜର ବିଶିଷ୍ଟତା ଅନୁରୂପ ବିଶେଷ ଧର୍ମ ରହିଛି । ଯାହା- ସମାଜରେ ପ୍ରାପ୍ତ ସ୍ଥିତି, ବ୍ୟବସାୟ ଦକ୍ଷତା, ପ୍ରତିଭା, କାର୍ଯ୍ୟକ୍ଷେତ୍ର, ସ୍ୱଭାବ, ସ୍ୱ-ସଂକଳ୍ପ ଅନୁସାରେ ନିର୍ଦ୍ଧାରିତ ହୋଇଥାଏ । ଉଦାହରଣତଃ- ଯଦି ଆମେ ସକାଳୁ ନିର୍ଦ୍ଦିଷ୍ଟ ଶ୍ରେଷ୍ଠ କାର୍ଯ୍ୟ (ଦାନ, ଯଜ୍ଞ, ଯୋଗ, ସେବା, କରୁଣା ଆଦି) କରିବୁ ତେବେ ଏହା ସଂକଳ୍ପ କାରଣରୁ ଏହି ସମୟ ପାଇଁ ବିଶିଷ୍ଟ ଧର୍ମ କୁହାଯିବ । ବର୍ଣ୍ଣଧର୍ମ, ଆଶ୍ରମଧର୍ମ, ରାଜଧର୍ମ, ଗୁରୁଧର୍ମ, ଛାତ୍ରଧର୍ମ ଆଦି ବିଶିଷ୍ଟ ଧର୍ମ ପର୍ଯ୍ୟାୟର । ପ୍ରତ୍ୟେକ ବ୍ୟକ୍ତିଙ୍କ ସାମାଜିକ ଏବଂ ଆଧାତ୍ମିକ କର୍ତ୍ତବ୍ୟ ତାହାର ସ୍ୱଧର୍ମ । ଏଥିରେ ସାମାନ୍ୟ ଧର୍ମ ଓ ବିଶେଷ ଧର୍ମର ସମନ୍ୱୟ ରହିଛି, ଯୋଗଦର୍ଶନରେ କୁହାଯାଇଛି ଯେ ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ (ସଂଜମ) ଏବଂ ଅପରିଗ୍ରହ ଏହି ପାଞ୍ଚ ସାର୍ବଭୌମ 'ଯମ' ସମସ୍ତଙ୍କ ଦ୍ୱାରା ସବୁ ସମୟରେ କରଣୀୟ । ଧର୍ମ ସମ୍ବନ୍ଧରେ ଯୋଗଦର୍ଶନରେ ସର୍ବାଧିକ ବିଚାର ଲକ୍ଷ୍ୟଣୀୟ । ଯୋଗସୂତ୍ରର ବ୍ୟାସ ଭାଷ୍ୟର ପ୍ରଥମ ପନ୍ତିରେ ସ୍ପଷ୍ଟ କହିଛନ୍ତି- 'ଯୋଗ୍ୟତା ବଚ୍ଛିନ୍ନ ଧର୍ମିଣଃ ଶକ୍ତିଃ ଏବ ଧର୍ମଃ' । କୌଣସି ଧର୍ମୀଙ୍କ ଯୋଗ୍ୟତାରେ ବିଶେଷିତ ଶକ୍ତି ହିଁ ଏହାର ଧର୍ମ । ଯେପରି ଦାହକତା ଅଗ୍ନିର ଧର୍ମ, ବିଦ୍ୟାର୍ଥୀର ଧର୍ମ ପାଠ ପଢ଼ିବା, ଅଧ୍ୟାପକଙ୍କ ଧର୍ମ ପାଠ ପଢ଼େଇବା, ଅର୍ଥାତ୍ ଯେଉଁ ବ୍ୟକ୍ତି ବା ବସ୍ତୁର ପରିଚୟ ରହିଛି, ସେହି ବ୍ୟକ୍ତିଙ୍କ ଧର୍ମ ହିଁ ତାହା । ଯୋଗ ଭାଷାରେ ଏହାକୁ 'ପଦାର୍ଥ' ବା ବୁଦ୍ଧ ଭାବ ଧର୍ମ ଅଥବା ଯେଉଁଥିରେ ଯାହାର ବୋଧ ରହିଛି ତାହାକୁ ତାହାର ଧର୍ମ କୁହାଯାଏ ।



# ୪. ଶରଣାଗତି

ଇହଲୋକ ଓ ପରଲୋକରେ ଦୁଃଖରୁ ନିସ୍ତାର ଲାଭକରି ନିତ୍ୟ ଅଖଣ୍ଡ ପରମାତ୍ମାଙ୍କ ପ୍ରାପ୍ତି ନିମିତ୍ତ ଭଗବାନଙ୍କ ଶରଣାଗତି ହିଁ ମୁଖ୍ୟ ଉପାୟ । ଯେ ଥରେମାତ୍ର ସର୍ବଭାବରେ ନିଜକୁ ପରମାତ୍ମାଙ୍କ ଚରଣରେ ଅର୍ପଣ କରିଦିଏ, ସେ ସବୁଦିନ ପାଇଁ ନିର୍ଭୟ, ନିଶ୍ଚିନ୍ତ ଏବଂ ପରମ ସୁଖୀ ହୋଇଯାଏ । ତାହାର ଯୋଗକ୍ଷେମର ସମସ୍ତ ଭାର ଭଗବାନ ସ୍ୱୟଂ ବହନ କରନ୍ତି । ନିଜେ ତରେଇ ହୋଇ ତା'ର ଜୀବନ ତରଣୀକୁ ଭୀଷଣ ସଂସାର-ସାଗରର ଉତ୍ତାଳ ତରଙ୍ଗରୁ ବଞ୍ଚାଇ ସୁରକ୍ଷିତ ରୂପେ ପରମାନନ୍ଦ ଧାମରେ ପହଞ୍ଚାଇ ଦିଅନ୍ତି । ତାକୁ କୌଣସି ଚିନ୍ତା ବା ଇଚ୍ଛା କରିବାର ଆବଶ୍ୟକତା ନାହିଁ । କିନ୍ତୁ ଏହି ଶରଣାଗତି କିପରି ବସ୍ତୁ ? କିପରି ହୁଏ, ଏ ସମ୍ବନ୍ଧରେ ବିଚାର କରିବା, ଶରଣାଗତି କେବଳ ଶବ୍ଦରେ ହୁଏନାହିଁ କିମ୍ବା ଯେ ବୁଝିକରି ଚୁପ୍‌ଚାପ୍ ନିଷ୍କର୍ମା ହୋଇ ବସିଯିବାର ନାମ ମଧ୍ୟ ନୁହେଁ ଅଥବା ମୁଁ ତ ତାଙ୍କ ଶରଣକୁ ଆସିଯାଇଛି, ମୋତେ ଏବେ କୌଣସି କାମ ପାଇଁ ହାତପାଦ ହଲାଇବା କିମ୍ବା ଭାବିବାର ପ୍ରୟୋଜନ କ'ଣ ? ସେ ସବୁ ଆପଣ ଠିକ୍ କରି ଦେବେ । ମୋର ତ କିଛି କର୍ତ୍ତବ୍ୟ ନାହିଁ । ଯଦି ଏହା ଶରଣାଗତି ହୁଏ ତେବେ ପ୍ରତ୍ୟେକ ଅଳସୁଆ ତମୋଭିଭୂତ ପ୍ରମାଦୀ ମନୁଷ୍ୟ ଏପରି କରିପାରେ । ଶରଣାଗତ ଭକ୍ତ ଆପଣାର ଅହଂକୁ ଏବଂ ଅହଂ ସମ୍ବନ୍ଧିତ ପ୍ରତ୍ୟେକ ସୂକ୍ଷ୍ମାତିସୂକ୍ଷ୍ମ ଭାବକୁ ପରମାତ୍ମାଙ୍କୁ ଅର୍ପଣ କରିଦିଏ । ତା'ର ଜୀବନ ପରମାତ୍ମାଙ୍କ ରୁଚିର ଜୀବନ, ତା'ର ମନ ପରମାତ୍ମାଙ୍କ ରୁଚିର ମନ, ତା'ର ବୁଦ୍ଧି ପରମାତ୍ମାଙ୍କ ବୁଦ୍ଧି ହୋଇ ଯାଇଥାଏ । ତାହାର ସମସ୍ତ କ୍ରିୟା ପରମାତ୍ମାଙ୍କ ମନୋନୁକୂଳ ହୋବାରେ ଲାଗିଥାଏ । ଏହିପରି ଅହଂ ଓ ମମର ମନ, ବୁଦ୍ଧି, ଇନ୍ଦ୍ରିୟ ଶରୀର ସମସ୍ତ ପ୍ରପଞ୍ଚ ସହିତ ସର୍ବଭାବରେ ସମର୍ପଣ ହିଁ ଯଥାର୍ଥ ଶରଣାଗତିର ସ୍ୱରୂପ ।



# ୫. ଜୀବନର ପରମ କର୍ତ୍ତବ୍ୟ

ଜୀବ ଈଶ୍ୱରଙ୍କ ଅଂଶ, ଅତଏବ ଏହା ଅବିନାଶୀ, ଚେତନ, ନିର୍ମଳ ଏବଂ ସ୍ୱଭାବରେ ସୁଖରାଶି । ଭଗବାନଙ୍କ ମାୟାରେ ଜୀବ ଆପଣାକୁ କର୍ତ୍ତା ଭୋକ୍ତା ମାନି କର୍ମ ବନ୍ଧନରେ ପଡ଼ିଥାଏ । ପତ୍ନୀ, ପୁତ୍ର, ମିତ୍ର ଆଦିଙ୍କ ସୁଖ ପ୍ରତ୍ୟେକ ଜନ୍ମରେ ପ୍ରାପ୍ତ ହୁଏ, କିନ୍ତୁ ମନୁଷ୍ୟତ୍ୱ, ପୁରୁଷତ୍ୱ ଏବଂ ବିବେକ ଯେ ସମସ୍ତ ଅନ୍ୟ ଯୋନିରେ ମିଳି ନଥାଏ । ଏହା ତ କେବଳ ମନୁଷ୍ୟ ଯୋନିରେ ପ୍ରାପ୍ତ ହୋଇଥାଏ । ଏ ସଂସାରର ମାୟା ମିଥ୍ୟା ଏବଂ ଶରୀର ମଧ ମିଥ୍ୟା କାରଣ ଏହା କ୍ଷଣଭଙ୍ଗୁର । ଏହାର ଗୋଟିଏ ମାତ୍ର ଧର୍ମ- ବିନାଶ । ଏହା ରକ୍ତ- ମାଂସ, ହାଡ଼ ହେବାରୁ ଅସୁନ୍ଦର ଏବଂ ଅପବିତ୍ର, ଏଣୁ ହରି ଭଜନ ହିଁ ଜୀବନର ଲକ୍ଷ୍ୟ ହେବା ଉଚିତ । ଯହିଁରେ ସତ୍ ଅସତ୍‌ର ବିଚାର କରାଯାଇପାରେ, ସେହି ସୁରଦୁର୍ଲଭ ମନୁଷ୍ୟ ଶରୀରକୁ ପ୍ରାପ୍ତ କରି ଭଗବାନଙ୍କୁ ଭଜନ ନକରି, ସାଧୁ ସନ୍ଥଙ୍କ ସେବା ନକରି ଯେଉଁ ବ୍ୟକ୍ତି ନିଜେ ନିଜକୁ ଇନ୍ଦ୍ରିୟ ସୁଖ ଭୋଗରେ ହିଁ ସମାପ୍ତ କରିଦିଏ, ସେ କୁମତି ଏବଂ ଅଧମ ପୁରୁଷ । ତା' ଜନ୍ମକୁ ଧିକ୍‌କାର- ଏହା ଶାସ୍ତ୍ର ଏବଂ ସନ୍ଥଙ୍କ ମତ ।

ଭଗବାନଙ୍କ ଭଜନ କରି ତାଙ୍କ ଶରଣକୁ ଯିବାରେ ହିଁ ନର ଜନ୍ମର ସଫଳତା । ଜୀବର ସବୁଠାରୁ ବଡ଼ ଧର୍ମ ନାମ ସଂକୀର୍ତ୍ତନ ଆଦିରେ ଭଗବାନଙ୍କ ଚରଣରେ ଭକ୍ତି ପ୍ରାପ୍ତ କରିବା ।

ଭଗବାନଙ୍କ ସେବାରେ ଛ'ଗୋଟି ଅଂଶ- (୧) ନମସ୍କାର, (୨) ସ୍ତୁତି, (୩) ସମସ୍ତ କର୍ମ ସମର୍ପଣ, (୪) ସେବାପୂଜା, (୫) ଚରଣ କମଳର ଚିନ୍ତନ, (୬) ଲୀଳା କଥା ଶ୍ରବଣ, ଏହି ସେବନ ଦ୍ୱାରା ଭଗବାନଙ୍କ ପ୍ରାପ୍ତି ସୁଲଭ ହୋଇଥାଏ ।



# ୬. ପ୍ରେମ

ଭକ୍ତ ସେ, ଯାହାର ହୃଦୟ ପ୍ରେମରେ ପୂର୍ଣ୍ଣ ହୋଇଛି । ପ୍ରେମ କରିବା ମଧ୍ୟ କଠିନ, ପ୍ରେମ ପଥ ମଧ୍ୟ ଅତ୍ୟନ୍ତ ଦୁର୍ଗମ । ପ୍ରେମ କରାଯାଏ ନାହିଁ, ପ୍ରେମ ତ ପ୍ରଭୁକୃପାରୁ ଉତ୍ପନ୍ନ ହୋଇଥାଏ । ଇଚ୍ଛାକରି ପ୍ରେମ କରିବା କଠିନ, ସଂସାରରେ ସଚ୍ଚା ପ୍ରେମୀ ତ ବିରଳ ହୋଇଥାଆନ୍ତି, କାରଣ ପ୍ରେମରେ ସର୍ବସ୍ୱ ବଳୀଦାନ ଦେବାକୁ ହୁଏ । ବାସ୍ତବିକ ପ୍ରେମୀକୁ ତ ସଂସାରର ସାଧାରଣ ବ୍ୟକ୍ତି ଚିହ୍ନି ପାରନ୍ତି ନାହିଁ । (ଅବଜାନାନ୍ତି ମାଂମୂଢ଼ା ପରି) ସେମାନେ ପ୍ରେମୀକୁ ପାଗଳ ବିଚାରିଥାଆନ୍ତି । ବସ୍ତୁତଃ ପ୍ରେମ ବାସ୍ତବ ଈଶ ଆରାଧନା ।

ଅଢ଼େଇ ଅକ୍ଷର ଏହି 'ପ୍ରେମ' ଶବ୍ଦ, କିନ୍ତୁ ତାକୁ ବୁଝିବା ଶ୍ରୁତିଠାରୁ ମଧ୍ୟ ଅଧିକ କଠିନ । ଦେବର୍ଷି ନାରଦ ଏହାକୁ "ଅନିର୍ବଚନୀୟ ପ୍ରେମ ସ୍ୱରୂପମ୍" (ନାରଦ ଭକ୍ତି ସୂତ୍ର ୫୧) କହି ଏହାର ବ୍ୟାଖ୍ୟାନ କରି ଅଛନ୍ତି । ପ୍ରେମର ବାସ୍ତବ ସ୍ୱରୂପ ବାଣୀର ବିଷୟ ନୁହେଁ । ଦେବର୍ଷି ତାହାକୁ 'ସୂକ୍ଷ୍ମତର ଅନୁଭବ ରୂପମ୍' କହିଛନ୍ତି । ଅର୍ଥାତ୍ ପ୍ରେମ ସୂକ୍ଷ୍ମରୁ ସୂକ୍ଷ୍ମତର ଏବଂ ଅନୁଭବ୍ୟ ବିଷୟ । ପ୍ରେମ 'ମୂକାସ୍ୱାଦନବତ୍' ହୋଇଥାଏ । ପ୍ରେମୀ ପ୍ରେମର ବର୍ଣ୍ଣନା ନିଜ ବାଣୀରେ କେବେ କରି ନପାରେ । ତାହା ତ ନିଜ ଜୀବନ ଚରିତ୍ର ଦ୍ୱାରା, ନିଜ କ୍ରିୟା କଳାପ ଦ୍ୱାରା ତାହାକୁ କିଞ୍ଚିତ ବ୍ୟକ୍ତ କରିପାରେ । ପ୍ରେମରେ ସ୍ୱସୁଖର କାମନା ରହେ ନାହିଁ । ପ୍ରେମୀ ମନରେ ଗୋଟିଏ ହିଁ ଇଚ୍ଛା ବଳବତୀ ହୋଇଥାଏ ସୁଖୀ ପ୍ରୀତମ ପ୍ୟାରା ହମାରା ରହେ । ନିଜ ସୁଖକୁ କେବେ ଚାହେଁନାହିଁ । 'ତତ୍ସୁଖେ ସୁଖୀତ୍ୱମ୍' ଅର୍ଥାତ୍ ପ୍ରିୟତମଙ୍କ ସୁଖରେ ହିଁ ନିଜକୁ ସୁଖୀ ମାନିବା ଏହା ପ୍ରେମର ଲକ୍ଷଣ ।



# ୭. ସଂସାର ଓ ଈଶ୍ୱର

ଭଗବତ୍ ବିଶ୍ୱାସ ଏବଂ ବିଷୟର ଆଶା ଏ ଦୁଇଟି ମଧ୍ୟରେ ବଡ଼ ବିରୋଧୀ ରହିଛି, ତଥାପି ବିଷୟ ମଧ୍ୟ ଭଗବାନ୍‌ଙ୍କ ପୂଜା ପାଇଁ ଉଦ୍ଦିଷ୍ଟ ହେଲେ କୌଣସି ଆପତ୍ତି ନାହିଁ । ବିଷୟରେ ଯେଉଁ ଆଶା ରହିଛି, ସୁଖର, ସମୃଦ୍ଧିର, ଆରାମର, ଶାନ୍ତିର, ଉନ୍ନତିର, ଉଦ୍ଧାରର, ପ୍ରଗତିର ଏ ଯେତେ ମଧ୍ୟ ଶୁଭ ଆଶା ଆମେ ବିଷୟରେ କରିଥାଉ, ସେ ସବୁ ଦୁରାଶା, କାରଣ ଏଥିରେ ସେ ଚିଜ ହିଁ  ନାହିଁ । ଯେଉଁ ଚିଜ ଯେଉଁଠି ନାହିଁ ସେଠାରେ ମିଳିବ କିପରି ? ଶ୍ରୀ ତୁଳସୀ ଦାସ କହନ୍ତି କି ମୃଗତୃଷ୍ଣାରେ କାହାରି ତୃଷା ମେଣ୍ଟିଯାଏ ତେବେ ବିଷୟରେ ତୃଷ୍ଣା ମେଣ୍ଟିବ । ଜଳ ଯେଉଁଠି ନାହିଁ କେବଳ ବାଲିରେ ଲହରିଭ୍ରମ ଦୃଶ୍ୟ ହେଉଛି, ବାଲି ଉତପ୍ତ, ଆମେ ଚାହୁଁଛୁ ସେହି ବାଲି ଆମ ଶୋଷ ମେଣ୍ଟାଇ ଦେବ । ମେଣ୍ଟେଇବ କିପରି ? ଯେଉଁଠି ଜଳ ହିଁ ନାହିଁ । ଏଣୁ ମନୁଷ୍ୟ ଯେ ଯାବତ୍ ଜଗତରେ, ଜଗତର ପଦାର୍ଥରେ ଭୋଗର, ଭୋଗ ବସ୍ତୁ ଦିଗରେ ଜଗତ ସମ୍ବନ୍ଧିତ ଏବଂ ପ୍ରାଣୀଙ୍କର ଆଶା କରିବ, ସେ ଯାବତ୍ ମନୁଷ୍ୟ କଦାପି ସଫଳ ହେବ ନାହିଁ । କିନ୍ତୁ ସବୁଠାରୁ ବଡ଼ କଥା ହେଲା ଆମେ କହୁଛୁ- ଶୁଣୁଛୁ, କିନ୍ତୁ କହିବା ଶୁଣିବା ଲୋକର ମନରେ ଯେବେ ଦେଖାଯାଏ କି ମୋହ ଗ୍ରସ୍ତ ହୋଇଯାଇଛି, ବିଷୟର ଆଶା ରହିଛି, ଏବଂ ଭଗବାନଙ୍କ ଉପରେ ପୂର୍ଣ୍ଣବିଶ୍ୱାସ ହୋଇନାହିଁ । ଭଗବାନଙ୍କ ଉପରେ ପୂର୍ଣ୍ଣବିଶ୍ୱାସ ହେଲେ ବିଷୟର ଆଶା ରହିବ ନାହିଁ, ବିଷୟର ଆଶା ଅର୍ଥ ହେଲା ଭଗବାନଙ୍କ ଉପରେ ପୂରା ବିଶ୍ୱାସ ହିଁ ନାହିଁ ।

"ଯହାଁ ରାମ ତହାଁ କାମ ନହିଂ ଜହାଁ ରାମ ନହିଁ କାମ
ତୁଳସୀ କବହୁଁକ ରହି ସକେ ରବି ରଜନୀ ଏକଠାମ ।।"



# ୮. ତୃଷ୍ଣା

ବାର୍ଦ୍ଧକ୍ୟ ଆସି ପହଂଚିଗଲା, ଇନ୍ଦ୍ରିୟ ଶକ୍ତି ହ୍ରାସ ପାଇଲା, ଚାରିପାଖରୁ ଅନ୍ୟମାନେ ମୁହଁ ଫେରାଇ ନେଉଛନ୍ତି, କିନ୍ତୁ ତୃଷ୍ଣା କମିଲା ନାହିଁ । ଆଉ କିଛି ଦିନ ବଞ୍ଚିଯିବି, ପିଲାମାନଙ୍କ ପାଇଁ କରିଯିବି । ଔଷଧ ଖାଇ ପୁଷ୍ଟ ହୋଇ ସଂସାରର କିଛି ସୁଖ ଭୋଗ କରିନେବି । ମରିବା ତ ନିଶ୍ଚୟ, କିନ୍ତୁ ମୋ' ଆଖିରେ ପୁତ୍ରର ବିବାହ ହୋଇଗଲେ ତ ଭଲ । ବ୍ୟବସାୟକୁ ପିଲାମାନେ ପରିଚାଳନା ଜ୍ଞାନ ହେଇଯାଉ । ଏହିପରି କଥା ବହୁତ ବୃଦ୍ଧ ବ୍ୟକ୍ତିଙ୍କଠାରୁ ଶୁଣିବାକୁ ମିଳେ ।

ଜଣେ ସାଧୁଙ୍କ ସହ ଜଣେ ପରିଚିତ ଧନାଢ଼୍ୟ ବ୍ୟବସାୟୀଙ୍କ ବାର୍ତ୍ତାଳାପ ହେଲା । ତାଙ୍କର ଯୁବକ ସନ୍ତାନ ମଧ୍ୟ ଥିଲେ । ଥରେ ସେ ସାଙ୍ଘାତିକ ବେମାର ପଡ଼ିଲେ । ବହୁ କଷ୍ଟରେ ଜୀବନ ରକ୍ଷା ହେଲା । ସାଧୁଙ୍କ ସହ ଏହି ସ୍ଥିତିରେ ସାକ୍ଷାତ୍ ହେଲା । ଶରୀର ସମ୍ବନ୍ଧିତ ବାକ୍ୟାଳାପ ପରେ ସାଧୁ କହିଲେ- ଏବେ ଆପଣ ସଂସାର ଚିନ୍ତା ଛାଡ଼ି ଭଗବତ୍ ଭଜନରେ ମନ ଲଗାନ୍ତୁ । ଏହି ବ୍ୟାଧିରେ ଆପଣ ଭଗବତ୍ କୃପାରୁ ମୃତ୍ୟୁ ଦ୍ୱାରରୁ ଫେରିଛନ୍ତି । ଏବେ ଯେତେଦିନ ଏ ଶରୀର ରହିବ ଆପଣ କେବଳ ଭଗବାନଙ୍କ ଭଜନ କରିଚାଲନ୍ତୁ । ସେ କହିଲେ- 'ଆପଣଙ୍କ କହିବା ତ ଠିକ୍, କିନ୍ତୁ ପୁଅ ଏବେ ଏତେ ଚତୁର ହୋଇନାହିଁ । ଆଉ ପାଞ୍ଚବର୍ଷ ରହିଗଲେ ଘରର କିଛି ଠିକ୍ କରି ଦେବି । ପୁଅ ବି ଆଉଟିକେ ପାରିବାର ହୋଇଯିବ । ମରିବା ତ ନିଶ୍ଚୟ । କ'ଣ କରିବି ? ଭଜନ ତ ହେଉନାହିଁ । ସାଧୁ ପୁଣି କହିଲେ- "ଆପଣ ଏବେ ଘରକୁ କ'ଣ ଠିକ୍ କରିବେ ? ପରମାତ୍ମାଙ୍କ କୃପାରୁ ଆପଣଙ୍କର ପର୍ଯ୍ୟାପ୍ତ ଧନ ରହିଛି । ଆପଣଙ୍କ ପୁଅ ମଧ୍ୟ ଚାଲାଖ ହୋଇଗଲାଣି । ଏବେ ଆପଣ ମରିଯାଇଥିଲେ କିଏ ଘର ଠିକ୍ କରିଥାଆନ୍ତା ।" ସେ ପୁଣି କହିଲେ ଏହା ତ ମୁଁ ଜାଣେ କିନ୍ତୁ ତୃଷ୍ଣା ଛାଡୁନାହିଁ । ଏହି ଦୃଷ୍ଟାନ୍ତରୁ ଜଣାଗଲା ତୃଷ୍ଣା କିପରି ମନୁଷ୍ୟକୁ କବଳିତ କରିଛି, ଯେଉଁ ସବୁ କାମନା ପୂର୍ତ୍ତି ହେଉଛି, ଆହୁରି ଆହୁରି ତୃଷ୍ଣା ପ୍ରଜ୍ୱଳିତ ହେଉଛି ।

**ସର୍ବସଂସାର ଦୁଃଖାନାଂ ତୃଷ୍ଣୈକା ଦୀର୍ଘ ଦୁଃଖଦା**
**ଅନ୍ତଃ ପୁରସ୍ଥ ମପି ଯା ଯୋଜୟତ୍ୟତି ସଂକଟେ ।**

ସଂସାରରେ ଯେତେ ଦୁଃଖ ରହିଛି, ତନ୍ମଧ୍ୟରେ ତୃଷ୍ଣା ହିଁ ସର୍ବାଧିକ ଦୁଃଖ ଦାୟୀ, ଯେ କେବେ ଘରୁ ବାହାରକୁ ବାହାରେ ନାହିଁ, ତାକୁ ମଧ୍ୟ ତୃଷ୍ଣା ବଡ଼ ସଂକଟରେ ପକାଇଦିଏ ।



# ୯. ଏକାକୀ

ମନୁଷ୍ୟ ସଂସାରରେ ଯାତାୟାତ ଏକାକୀ ହିଁ କରିଥାଏ । କାହାରି ସାଥୀରେ ମିଶିଯାଏ ନାହିଁ । ଯେ ଯାବତ୍ ସଂସାରରେ ବିଚରଣ କରେ ସେ ଯାବତ୍ ଜୀବନସାଥୀ, ମିତ୍ର, ଶିଶୁ, ମା', ଭଉଣୀ ଏହିପରି ଅନେକ ସଂବନ୍ଧରେ ଯୁକ୍ତ ହୋଇଯାଏ । ସତ କହିବାକୁ ଗଲେ ଏହି ସଂପର୍କ କେତେଦିନ ପାଇଁ? ସମସ୍ତେ ତ ଚାଲିଯାଆନ୍ତି, ବାସ୍ତବରେ କେହି ତା'ର ଆପଣାର ହୁଅନ୍ତି ନାହିଁ । ମନୁଷ୍ୟ ଭ୍ରମରେ ବୁଡ଼ି ବସିଥାଏ । ଏ ସାଥୀ ହିଁ ମୋ'ର ପ୍ରାଣ, ମୋ'ର ସବୁକିଛି, କିଛିଦିନ ପରେ କୌଣସି କାରଣରୁ ସେ ଚାଲିଗଲା । ଏବେ ସେ ମୋର ନୁହେଁ, ମୋର ହୋଇଥିଲେ ବିଚ୍ଛେଦ ହୁଅନ୍ତା କାହିଁକି? ଅନ୍ୟ କେହି ଆସିଲେ, ସେ ମଧ୍ୟ କାଳାନ୍ତରରେ ଚାଲିଗଲେ । ଏହିପରି ଚକ୍ର ଚାଲୁଥାଏ ।

ମନୁଷ୍ୟ ଏକାକୀ ନିଜକୁ ତଥା ଅନ୍ୟକୁ ଅଭାଗା ଭାବିଥାଏ । କ'ଣ ଆମେ ସମସ୍ତେ ଏକାକୀ? ଆମେ କ'ଣ ଏକାକୀ? ଆମେ କ'ଣ ପରମାତ୍ମାଙ୍କ ଅଂଶ ନୋହୁଁ? ଆମେ କ'ଣ ତାଙ୍କ ଠାରୁ ବିଚ୍ଛିନ୍ନ ହୋଇନାହୁଁ? କେବେ ପୃଥକ୍ ହେଲୁ କହି ହେବନାହିଁ, ଆମେ ନିଜ ଅଂଶକୁ ଭୁଲି ଯାଇଛୁ । ଏଠି ସେଠି ସନ୍ଧାନ କରୁଛୁ- ସେହି ମୂଳକୁ, ଯହିଁରେ ମିଶି ଏକାକାର ହୋଇଯିବୁ, ତାକୁ ଚିହ୍ନନପାରି ଭ୍ରମୁଛୁ, ଚିହ୍ନିପାରିଲେ ତ ଆମେ ତା' ସାଥୀ ହୋଇଯିବୁ । ସେ 'ଏକ' ଏକାକୀ ଆପଣାଇଲେ ହିଁ ସବୁ ହୋଇଗଲା । ସେହି ମୂଳ 'ଏକ'କୁ ଚିହ୍ନିଗଲେ ସାଥୀ ହୋଇଯିବା । ସେ ତ ଆମର ଆଦ୍ୟ ସାଥୀ । ବାକୀ ସବୁ ଅଜ୍ଞାନର ଘର । ଖୋଜୁଛୁ, ଏବଂ ଭ୍ରମୁଛୁ ।

ଧୀରେଧୀରେ ଏକାକୀ ଭାବ ଭଲ ଲାଗିବ । କିଛି ସମୟ ପାଇଁ ନିଜକୁ ତାଙ୍କ ସହ ଯୋଡ଼ି ଦେଇଥିଲି, ନିଜର ମୂଳ ସାଥୀକୁ ସନ୍ଧାନ କରି ଦେଇଥିଲି । ନିଜ ବଖରାରେ ଥିବା ଗୋପାଳଙ୍କ ମୂର୍ତ୍ତିକୁ ଦୃଷ୍ଟିରେ ଆଣିଲି, ଆପେଆପେ ପାଟିରୁ ଶବ୍ଦ ବାହାରିଗଲା, ପ୍ରଭୁ! ମୋତେ ଏକାକୀ କରିଦିଅ । କାରଣ ତୁମ ସହିତ ମିଶିବାପାଇଁ ଏକାକୀ ନିତାନ୍ତ ପ୍ରୟୋଜନ । ଏକାକୀ ତୁମ ସହ ଏକାକାର ହୋଇଯିବି । ସଂସାର ଭିଡ଼ରେ ତାହା କ'ଣ ସମ୍ଭବ? ସୁତରାଂ ମୋତେ ଏକାକୀ କରିଦିଅ । ଏକାକୀ କରି ଦିଅ ।



# ୧୦. ମାନସିକ ଶାନ୍ତି ପ୍ରାପ୍ତି

ଆଜି ପାଶ୍ଚାତ୍ୟ ସଭ୍ୟତାର ଚାକଚକ୍ୟ, ଉପଭୋକ୍ତାବାଦର ଲାଳସା ଏବଂ ଭୌତିକବାଦର ଅନ୍ଧ ଦୌଡ଼ରେ ମନୁଷ୍ୟ ମରୁଭୂମିର ମରୀଚିକା ପଛରେ ମୃଗ ଧାଇଁବା ପରି ଦୌଡ଼ିଚାଲିଛି । ଏହି ଅନ୍ଧ ଦୌଡ଼ ତା'ର ସମସ୍ତ ସୁଖ ସମାପ୍ତ କରି ଦେଇଛି ଏବଂ ଦେଇଛି କେବଳ ଚିନ୍ତା- ଉଦ୍‌ବେଗ । ଏହି ଚିନ୍ତା ଏବଂ ଉଦ୍‌ବେଗ କାଳାନ୍ତରରେ ଶାରୀରିକ ରୋଗର କାରଣ ହୋଇ ଠିଆ ହୋଇଛି । ଏଥିରୁ ମୁକୁଳି ଏବଂ ଜୀବନକୁ ସୌନ୍ଦର୍ଯ୍ୟ କରିବା ପାଇଁ ଶ୍ରୀମଦ୍ ଭାଗବତ୍ ଗୀତାରେ ଭଗବାନ ଶ୍ରୀକୃଷ୍ଣ ବଡ଼ ମହତ୍ତ୍ୱପୂର୍ଣ୍ଣ ବାଣୀ ଦେଇଛନ୍ତି । ତୁମେ କ'ଣ ନେଇ ଜନ୍ମ ହୋଇଥିଲ ଏବଂ ମରିବା ବେଳକୁ କ'ଣ ନେଇ ସାଥୀରେ ଯିବ ? ଆମେ ସମସ୍ତେ ଜାଣନ୍ତି ଯେ କେହି ମଧ କିଛି ନେଇ ଜନ୍ମ ହୋଇ ନାହାଁନ୍ତି, କେହି ମୃତ୍ୟୁ ପରେ ନିଜ ସାଥୀରେ କିଛି ନେଇ ଯାଇ ପାରିବେ ନାହିଁ । ତେବେ ବି ସୁଦ୍ଧା ପ୍ରତ୍ୟେକ ବ୍ୟକ୍ତି ଅଧିକରୁ ଅଧିକ ସଂଗ୍ରହ କରିବାରେ ଲାଗିଛନ୍ତି । ଏହାର କାରଣ ହେଉଛି ପଦାର୍ଥ ପ୍ରତି ଆମର ମୋହ ଏବଂ ଆସକ୍ତି । ଯାହାକୁ ଶାସ୍ତ୍ରକାର ଗଣ 'ଅଜ୍ଞାନ' ସଂଜ୍ଞା ଦେଇ ଅଛନ୍ତି । ମହାପୁରୁଷଙ୍କ କଥନ ହେଉଛି ସମୟ ପୂର୍ବରୁ ଏବଂ ଭାଗ୍ୟରୁ ଅଧିକ କାହାରିକୁ କିଛି ମିଳେନାହିଁ । ଏଣୁ ଏହା ନିଶ୍ଚିତ ଯେ ଯାହା ଆମ ଭାଗ୍ୟରେ ନାହିଁ, ତାକୁ ଦୁନିଆର କୌଣସି ଶକ୍ତି ଆମକୁ ଦେଇ ପାରିବେ ନାହିଁ ଏବଂ ଯାହା ଆମ ଭାଗ୍ୟରେ ଅଛି, ତାକୁ ଅପ୍ରାପ୍ୟ କରିବାର ଶକ୍ତି କାହାରିବି ନାହିଁ । ଏଣୁ ଭଗବାନ ଅର୍ଜୁନକୁ  କହିଛନ୍ତି କି କର୍ମ କର ଫଳର ଇଚ୍ଛା ସ୍ୱୟଂ ନକରି ମୋ' ଉପରେ ଛାଡ଼ିଦିଅ । ଗୋସ୍ୱାମୀ ତୁଳସୀ ଦାସ ଲେଖିଛନ୍ତି-

ପହଲେ ବନା ପ୍ରାରବ୍‌ଧ ଅରୁ ପାଛେ ବନା ସରୀର
ତୁଳସୀ ଚିନ୍ତା ଛାଡ଼ିକେଁ କାହେ ଧରୈ ନ ଧୀର ।



# ୧୧. ମୃତ୍ୟୁ ରହସ୍ୟ

ଜୀବ ଏବଂ ଶରୀର ଦୁଇଟି ଭିନ୍ନ ତତ୍ତ୍ୱ । ଯେପରି ଆମେ ଜୀର୍ଣ୍ଣ ବସ୍ତ୍ରକୁ ଯଥା ସମୟରେ ପରିବର୍ତ୍ତନ କରିଥାଉ ସେହିପରି ଜୀବ (ଜୀବାତ୍ମା) ଶରୀର ପରିବର୍ତ୍ତନ କରିଥାଏ । ସ୍ୱାଭାବିକ ଜୀର୍ଣ୍ଣ ବସ୍ତ୍ର ପରିହାର କରାଯାଏ, ପୁନଃ କୀଟ ଦଂଷ୍ଟ୍ର, ଦଗ୍ଧ କିମ୍ବା ଅନ୍ୟ କିଛି କାରଣରୁ ବସ୍ତ୍ର କ୍ଷତ ହେଲେ ପରିହାର କରାହୁଏ । ଶରୀର ସାଧାରଣତଃ ଜରାଜୀର୍ଣ୍ଣ, ବ୍ୟାଧିଜୀର୍ଣ୍ଣ ହେଲେ, ଅଳ୍ପାୟୁ ଅବସ୍ଥାରେ ମଧ୍ୟ ତାକୁ ତ୍ୟାଗ କରିବାକୁ ହୁଏ ।

ମୃତ୍ୟୁ ସଂବନ୍ଧରେ ଯୋଗସିଦ୍ଧମାନଙ୍କର ମତ ହେଲା- ଯେ ମୃତ୍ୟୁର କିଛି ସମୟ ପୂର୍ବରୁ ମନୁଷ୍ୟ ଅସ୍ଥିରତା ଅନୁଭବ କରିବା ସହ ପୀଡ଼ାରେ ଛଟପଟ ହୁଏ । କାରଣ ସେତେବେଳେ ପ୍ରାଣଶକ୍ତି ସମସ୍ତ ନାଡ଼ୀମାନଙ୍କରୁ ସଂକୁଚିତ ହୋଇ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ କେନ୍ଦ୍ରିତ ହୁଏ । ପୁରାତନ ଅଭ୍ୟାସ ହେତୁ ତାହା ପୁନଃ ସେହି ନାଡ଼ୀରେ ପ୍ରବେଶ କରିବାକୁ ଚେଷ୍ଟିତ ହୁଏ । ଫଳରେ ଏକ ପ୍ରକାର ଆଘାତ ସୃଷ୍ଟି ହୁଏ । ଏହା ହିଁ ମୃତ୍ୟୁକାଳୀନ ପୀଡ଼ାର ହେତୁ । ରୋଗ, ଆଘାତ ବା ଅନ୍ୟ କୌଣସି କାରଣରୁ ମୃତ୍ୟୁ ଘଟିଲେ ସେଥିରେ କଷ୍ଟ ଉତ୍ପନ୍ନ ହୁଏ । ଯେବେ ପ୍ରାଣ ଚାଲିଯିବା ସମୟ ଅତି ନିକଟ ହୁଏ, ସେତେବେଳେ ଏକ ପ୍ରକାର ମୂର୍ଚ୍ଛା ଆସିଯାଏ ଏବଂ ସେହି ଅଚେତନ ଅବସ୍ଥାରେ ପ୍ରାଣ ଶରୀରରୁ ବାହାରି ଯାଏ । ମୃତ୍ୟୁ ସମୟରେ ମନୁଷ୍ୟର ବାହ୍ୟଶକ୍ତି ଏକତ୍ର ହୋଇ ଅନ୍ତର୍ମୁଖୀ ହୋଇଯାଏ ଏବଂ ସ୍ଥୂଳ ଶରୀରରୁ ବାହାରି ଚାଲିଯାଏ । ପାଶ୍ଚାତ୍ୟ ଯୋଗୀମାନଙ୍କ ମତରେ ପ୍ରାଣ ଶରୀର ମଧ୍ୟରୁ ଏକ ବାଇଗଣି ରଂଗର ଛାୟା ରୂପେ ବାହାରିଯାଏ । ଭାରତୀୟ ଯୋଗୀମାନେ ଏହାକୁ ଶୁଭ୍ରଜ୍ୟୋତି ବୋଲି କହିଛନ୍ତି ।

ଯେତେବେଳେ ଶାରୀରିକ ଶିଥିଳତା ଏବଂ ଅଚେତନତା ଆସେ ସେତିକିବେଳେ ମୃତ୍ୟୁ ହୁଏ । ପ୍ରାଣ ପ୍ରାୟ ଊର୍ଦ୍ଧ୍ୱ ରନ୍ଧ୍ର ଦ୍ୱାରା ବାହାରକୁ ଯାଇଥାଏ । ମୁଖ, ଆଖି, କାନ, ନାକ ଆଦି ଏହାର ପ୍ରମୁଖ ମାର୍ଗ । ଦୁଷ୍ଟ ବୃତ୍ତି ସଂପନ୍ନ ବ୍ୟକ୍ତିମାନଙ୍କର ପ୍ରାଣ ମଳ, ମୂତ୍ର ମାର୍ଗ ଦେଇ ବାହାରି ଯାଇଥାଏ । ଯୋଗୀମାନେ ବ୍ରହ୍ମ ରନ୍ଧ୍ର ମାର୍ଗରେ ପ୍ରାଣ ତ୍ୟାଗ କରିଥାନ୍ତି ।

(ପଣ୍ଡିତ ଶ୍ରୀରାମ ଶର୍ମା ଆଚାର୍ଯ୍ୟ)



# ୧୨. ରୁଦ୍ର ପରମେଶ୍ୱର

ସଚ୍ଚିଦାନନ୍ଦ ଘନ, ଜଗତ୍‌ଗୁରୁ, ମଙ୍ଗଳ ମୂଳ, ଚନ୍ଦ୍ରଶେଖର, ଯୋଗୀଶ୍ୱର ଓଁକାର ସ୍ୱରୂପ ଦେବାଧିଦେବ ମହାଦେବ ହେଉଛନ୍ତି ପରାତ୍‌ପର ତତ୍ତ୍ୱ । ସେ ନିରାକାର ପରଂବ୍ରହ୍ମ ପରମେଶ୍ୱର । ହେଲେ ହେଁ ଏହାଙ୍କ ଆରାଧନା ମୂର୍ତ୍ତି ରୂପରେ ତଥା ଲିଙ୍ଗ ରୂପରେ ହୋଇଥାଏ । ଲିଙ୍ଗ ଶିବ ଶକ୍ତିମୟ ବ୍ରହ୍ମାଣ୍ଡର ପ୍ରତୀକ । ଶ୍ରୀ ଶିବ ହେଉଛନ୍ତି ରୁଦ୍ର । ବେଦରେ ରୁଦ୍ରଙ୍କର ମହିମା ଅପାର । ଏ ସ୍ଥଳରେ ଆଚାର୍ଯ୍ୟ ସାୟଣ 'ଜଗତ୍ ସ୍ରଷ୍ଟା ରୁଦ୍ରଃ', 'ରୁଦ୍ର ପରମେଶ୍ୱର' ଆଦି କହି ତାଙ୍କୁ ପରମାତ୍ମା କହିଛନ୍ତି । ଶିବ ପୁରାଣର ଅଧିକାଂଶ ଭାଗ ରୁଦ୍ର ସଂହିତା, ଶତରୁଦ୍ର ସଂହିତା ଏବଂ କୋଟି ରୁଦ୍ର ସଂହିତା, ରୁଦ୍ରଦେବଙ୍କୁ ସମର୍ପିତ ହୋଇଛି । ରୁଦ୍ରାଷ୍ଟାଧ୍ୟାୟୀ ଗ୍ରନ୍ଥରେ ଭଗବାନ୍ ରୁଦ୍ର (ଶିବ)ଙ୍କ ମହିମା କୀର୍ତ୍ତିତ ।

ଭାଗବତ (୩/୧୨/୧୨-୧୩) ଅନୁସାରେ ଏକାଦଶ ରୁଦ୍ରଙ୍କର ନାମ ଯଥା- ମନ୍ୟୁ, ମନୁ, ମହିନସ, ମହାନ, ଶିବ, ଋତୁଧ୍ୱଜ, ଉଗ୍ରରେତା, ଭବ, କାଳ, ବାମଦେବ, ଧୃତବ୍ରତ । ଏକାଦଶ ରୁଦ୍ରାଣୀଙ୍କ ନାମ ଏହିପରି- ଧୀ, ବୃତ୍ତି, ଉଶନା, ଉମା, ନିୟୁତ୍, ସର୍ପି, ଇଳା, ଅମ୍ବିକା, ଇରାବତୀ, ସୁଧା ଏବଂ ଦୀକ୍ଷା ।

ଭଗବାନ ଶିବଙ୍କ ପୂଜାରେ ଆଡ଼ମ୍ବର ନଥାଏ । କୌଣସି ପାଣ୍ଡିତ୍ୟ ପ୍ରଦର୍ଶନର ଆବଶ୍ୟକତା ନାହିଁ । କୌଣସି ବିଶେଷ ପରିଧାନ ବିହିତ ନାହିଁ । ସେ ତ କରୁଣା, ବୈରାଗ୍ୟ, ପ୍ରେମ ଏବଂ ଜ୍ଞାନର ମଙ୍ଗଳମୂର୍ତ୍ତି । ଏହାଙ୍କ ଆରାଧନା ଢାଳେ ଶୁଦ୍ଧ ଜଳରେ ହୋଇପାରେ । ତାଙ୍କୁ ବିଲ୍ୱପତ୍ର ଏବଂ ପ୍ରାୟ ସର୍ବତ୍ର ପ୍ରାପ୍ତ ମନ୍ଦାର ଏବଂ ଦୁଦୁରା ପୁଷ୍ପ ତଥା ଫଳରେ ପ୍ରସନ୍ନ କରାଯାଇପାରେ । ଭକ୍ତ ନିକଟରେ ଏ ସକଳ ଅଭାବ ହେଲେ 'ହର ହର ମହାଦେବ' ବା 'ଓଁ ନମଃ ଶିବାୟ' କହି ଅଥବା ମୁଖ ବାଦ୍ୟ 'ବମ୍ ବମ୍' ଧ୍ୱନି ଦ୍ୱାରା ତାଙ୍କ କୃପା ପାତ୍ର ହୋଇହେବ । ଏହା ହିଁ ଭଗବାନ୍ ଆଶୁତୋଷଙ୍କ ବିଶେଷତା ।



# ୧୩. ମାନସିକ ଚାପରୁ ମୁକ୍ତ ହେବା କିପରି ?

ମାନସିକ ଶାନ୍ତି ନିମିତ୍ତ ଏକ ମହତ୍ତ୍ୱପୂର୍ଣ୍ଣ ସୂତ୍ର ହେଉଛି, ଯେତେଦୂର ସଂଭବ ନିଜ କାମ ନିଜେ କରିବା ଉଚିତ । ଛୋଟ ଛୋଟ କାମ ମଧ୍ୟ ଅନ୍ୟ ଦ୍ୱାରା କରାଇଲେ ଆମ ମନ ଅନୁସାରେ ନହେବାରୁ ଅଶାନ୍ତି ସୃଷ୍ଟି ହୁଏ । ଯହିଁରୁ ମନ କିଛି କାଳପାଇଁ ଉଦ୍‌ବେଳିତ ହୋଇଥାଏ । ଜୀବନରେ ମିତ ବ୍ୟୟିତାକୁ ସ୍ଥାନ ଦିଅନ୍ତୁ । ଆବଶ୍ୟକତା କମିଯିବ ତ ମାନସିକ ଆପେ ଆପେ କମିଯିବ ।

ମାନସିକ ଚାପ କମ୍ ହେବାପାଇଁ ଆଜିର କାମ ଆଜି କରିନିଅନ୍ତୁ । ପ୍ରତିଦିନ ନୂଆନୂଆ କାମ ଆସିବ । ଯଦି ପ୍ରଥମ କାମ ବାକୀ ରହିଗଲା ତେବେ କାମ ଅଧିକ ଏକାଠି ହେବ, ଏବଂ ଚାପ ନିଶ୍ଚୟ ଅଧିକ ହେବ । ପ୍ରତ୍ୟେକ କାର୍ଯ୍ୟକୁ ବିଚାର କରି କରିବା ଦରକାର । ତୁରନ୍ତ କରିବା ଉଚିତ୍ ନୁହେଁ, କାରଣ ପରିଣାମ ତ ସମୟ ଆସିଲା ପରେ ହିଁ ପ୍ରାପ୍ତ ହେବ ।

ମାନସିକ ଶାନ୍ତି ପାଇଁ ନିଜ ଅନ୍ତର୍ଯାତ୍ରା କରିବା ଉଚିତ । ସାତ୍ତ୍ୱିକ ଭୋଜନ, ସଦା ପରିଧାନ, ସ୍ୱାଧ୍ୟାୟ, ସେବା, ସାଧନା, ପ୍ରାର୍ଥନା, ତୀର୍ଥାଟନ, ସତ୍‌ସଂଗ, ବ୍ରତ, ଉପବାସ ଏବଂ ସର୍ବୋପରି ଧ୍ୟାନ ଅତ୍ୟନ୍ତ ଉପଯୋଗୀ । ଏହାଦ୍ୱାରା ବିକ୍ଷିପ୍ତ ମନ ଶାନ୍ତ ହେବ, ସ୍ଫୂର୍ତ୍ତି, ଆନନ୍ଦ ଏବଂ ଆତ୍ମବିଶ୍ୱାସ ବୃଦ୍ଧି ହେବ । ସ୍ମରଣ ରଖିବା କି ଦୁଃଖ ପାଇବା ପାଇଁ ଈଶ୍ୱର ଆମକୁ ସଂସାରକୁ ପଠାଇ ନାହାଁନ୍ତି । ଆମେ ସୁଖ ସ୍ୱରୂପ ପରମାତ୍ମାଙ୍କ ଅଂଶ ବିଶେଷ । ସୁଖ ଏବଂ ଆନନ୍ଦ ପ୍ରାପ୍ତି ପାଇଁ ସଂସାରକୁ ଆସିଅଛୁ । ଚାପରେ ବଂଚିବା ଆମର ନିୟତି ନହେବା ଉଚିତ ।



# ୧୪. ଲିଙ୍ଗ ଶବ୍ଦର ତାତ୍ତ୍ୱିକ ବିବେଚନ

ସାଧାରଣ ଭାବେ କେତେକ ବ୍ୟକ୍ତି ଲିଙ୍ଗ ଶବ୍ଦର ଅର୍ଥ ଶିବଲିଙ୍ଗ ବିଗ୍ରହରେ ଆରୋପିତ କରି ସେମାନେ ପାଠ କରିଥିବା ଲିଙ୍ଗାନୁଶାସନ ଅନୁସାରେ ଭାବି ନିଅନ୍ତି, କିନ୍ତୁ ବ୍ୟାପକ ଅର୍ଥରେ ଆର୍ଷ ଗ୍ରନ୍ଥମାନଙ୍କରେ ଲିଙ୍ଗ ଶବ୍ଦର ପ୍ରୟୋଗ କେଉଁ ଭାବରେ କରାଯାଇଛି ତାହା ଅନୁସଂଧେୟ ।

"ନିଷ୍କ୍ରମଣଂ ପ୍ରବେଶନ ମିତ୍ୟାକାଶସ୍ୟ ଲିଙ୍ଗମ୍ ।"(ବୈ.ଦର୍ଶନ. ୨/୧/୨୦)

ଯହିଁରୁ ବାହାରିବା, ପ୍ରବିଷ୍ଟ ହେବା, ଆଦି କ୍ରିୟା ହୋଇଥାଏ ତାହା ହେଉଛି ଆକାଶ । ଅର୍ଥାତ୍ ଏହା ଆକାଶର ଲିଙ୍ଗ ଲକ୍ଷଣ ।

"ଇତି ଇଦମିତି ଯତସ୍ତଦ୍ଦିଶ୍ୟଂ ଲିଂଗମ୍ ।" (ବୈ.ଦ. ୨/୧/୨୦)

ଏହା ଏଠାରେ ରହିଛି, ସେଠାରେ ରହିଛି, ଏହା ଦିଗର ଲିଙ୍ଗ ଲକ୍ଷଣ ।

"ଅପର ସ୍ମିନ୍ନପରଂ ଯୁଗ ପଚ୍ଚିରଂ କ୍ଷିପ୍ରମିତି କାଳ ଲିଂଗାନି ।"
(ବୈ.ଦ.୨/୨/୬)

ପର ଏବଂ ଅପରର ଜ୍ଞାନ ଏକ ସମୟରେ, ବିଳମ୍ବ ଏବଂ ଶୀଘ୍ରତାରେ ଇତ୍ୟାଦି ବ୍ୟବହାର ଯହିଁରେ ହୋଇଥାଏ, ତାହା କାଳର ଲିଙ୍ଗ ଲକ୍ଷଣ ।

"ଯୁଗ ପ୍ରଜ୍ଞାନାନୁପପତ୍ତି ର୍ମନସୋ ଲିଂଗମ୍ ।" (ନ୍ୟାୟ ଦର୍ଶନ -୧/୧୬)

ଗୋଟିଏ ସମୟରେ ଏକାବେଳକେ ଅନେକ ବସ୍ତୁର ଜ୍ଞାନ ହେବା- ନହେବା ମନର ଲିଙ୍ଗ ଲକ୍ଷଣ ।

ଉପର୍ଯ୍ୟୁକ୍ତ ଦୃଷ୍ଟାନ୍ତରୁ ସ୍ପଷ୍ଟହୁଏ କି ଆକାଶ, ଦିଗ, ମନ, କାଳ ଆଦି ନିରାକାର; ପ୍ରଚଳିତ ଲିଙ୍ଗ ଶବ୍ଦର ଅର୍ଥ ବିଶେଷ୍ୟ, ଚିହ୍ନ, ଆଦି ଭାବରେ ହୋଇଥାଏ । ଅତଃ ଯେ ନିରାକାର ତାଙ୍କ ତୁଳନା ନିରାକାର ବ୍ରହ୍ମଙ୍କ ସହ କରାଯାଇଛି, ତାଙ୍କ ଲକ୍ଷଣିକ ଗୁଣର ଭାବ ସ୍ପଷ୍ଟ । ତେବେ ତ ନିରାକାର ବ୍ରହ୍ମଙ୍କ ଚିହ୍ନଭୂତ ଶିବ ପ୍ରତିମାର ପୂଜନ ଏବଂ ସ୍ଥାପନ ଶ୍ରୀରାମଚନ୍ଦ୍ର କରିଥିଲେ, ଯେ ରାମେଶ୍ୱର ଶିବଲିଙ୍ଗ ନାମରେ ଖ୍ୟାତ ।

ବସ୍ତୁତଃ ପରମାତ୍ମା ନିରବୟବ, ପୁନଃ ସର୍ବଶକ୍ତିମାନ ହେତୁ ସବୁ ଜାଣନ୍ତି, ଶୁଣନ୍ତି ଇତ୍ୟାଦି । ସାକାର ରୂପେ ବିରାଜିତ ହୋଇ ଭକ୍ତ କଲ୍ୟାଣାର୍ଥ ବିରାଜିତ ହୁଅନ୍ତି । ପରମାତ୍ମା ସର୍ବବ୍ୟାପୀ ତାଙ୍କ ବିନା କୌଣସି ବସ୍ତୁ ରହିନପାରେ । (ଗୀତା ୧୦/୪୨)



# ୧୫. ଚରଣ ସ୍ପର୍ଶ

ଆମ ଭାରତୀୟ ସମାଜରେ ପରିବାରର ବୟସ୍କ ତଥା ସଂଥ ମହାତ୍ମାଙ୍କ ଚରଣ ସ୍ପର୍ଶ କରିବାର ପରମ୍ପରା ପ୍ରାଚୀନ କାଳରୁ ପ୍ରଚଳିତ । ଏହାର ପାଶ୍ଚାତ୍‌ରେ ଅନେକ କାରଣ ରହିଛି । ଶାସ୍ତ୍ରାନୁସାରେ ବରିଷ୍ଠ ବୟୋବୃଦ୍ଧ ଚରଣ ସ୍ପର୍ଶରେ ଆମର ପୁଣ୍ୟ ବୃଦ୍ଧିହୁଏ । ତାଙ୍କ ଶୁଭ ଆଶୀର୍ବାଦରେ ଆମର ଦୁର୍ଭାଗ୍ୟ ଦୂର ହୁଏ ଏବଂ ମାନସିକ ଶାନ୍ତି ମିଳେ । ବାସ୍ତବରେ ଲାଭ ଅଧିକ ହୁଏ ଯେବେ ସେ ଯୁବକ ବା ବୃଦ୍ଧ ହୁଅନ୍ତୁନା କାହିଁକି, ତାଙ୍କର ତପସ୍ୟା, ସାଧନାର ପ୍ରାଚୁର୍ଯ୍ୟ କେତେ ରହିଛି, ତାହା ତତ୍‌କାଳ ପାଦସ୍ପର୍ଶକାରୀକୁ ଆଶୀର୍ବାଦ ହୋଇ ପ୍ରାପ୍ତ ହୁଏ । କିନ୍ତୁ ଯେଉଁମାନଙ୍କର ସାଧନା ସମ୍ବଳ ନାହିଁ, ସେଠାରେ କିଛି ମିଳିବା ଆଶା କରାଯାଇ ନପାରେ । ପ୍ରଚଣ୍ଡ ସାଧନା ନିବିଷ୍ଟ ମହାତ୍ମାଙ୍କୁ ଦର୍ଶନ କରିବାକୁ ଦେଇନଥାନ୍ତି । ତେବେ ଚରଣ ସ୍ପର୍ଶ ଦ୍ୱାରା ଅହଙ୍କାର ଯଶ ଏବଂ ଅନ୍ତର ବିମଳ ହୋଇଥାଏ । ମନରେ ନୂତନ ସଂସ୍କାରର ବୀଜ ବପିତ ହୋଇଥାଏ ।

ଚରଣ ସ୍ପର୍ଶ, ପ୍ରଣାମ ନିବେଦନ, କିମ୍ବା ଅଭିବାଦନ ଭାରତୀୟ ସନାତନ ଶିଷ୍ଟାଚାରର ମହତ୍ୱପୂର୍ଣ୍ଣ ଅଂଗ । ଏହା ଏକ ଜୀବନ୍ତ ସଂସ୍କାର । ପ୍ରଣାମ- ନିବେଦନରେ ନମ୍ରତା, ବିନୟ, ଶୀଳ, ଶ୍ରଦ୍ଧା, ସେବା, ଆଦର ଏବଂ ପୂଜ୍ୟତା ଭାବ ସନ୍ନିହିତ । ଅଭିବାଦନରେ ଆୟୁ, ବିଦ୍ୟା, ଯଶ, ବଳର ବୃଦ୍ଧି ହୋଇଥାଏ । ଭାରତୀୟ ପରମ୍ପରାରେ ପ୍ରାତଃ ଜାଗରଣରୁ ଆରମ୍ଭ କରି ଶଯ୍ୟା ଗ୍ରହଣ ପର୍ଯ୍ୟନ୍ତ ପ୍ରଣାମର ଅବିଚ୍ଛିନ୍ନ ପରମ୍ପରା ପ୍ରବହମାନ ରହିଥାଏ । ପ୍ରାତଃ କରଦର୍ଶନରୁ ଆରମ୍ଭ କରି ଭୂମିବନ୍ଦନ କ୍ରମରେ ଶୟନ ପୂର୍ବରୁ ଈଶ ବିନୟ ପର୍ଯ୍ୟନ୍ତ ସବୁଠାରେ ଅଭିବାଦନର ଭାବ ଅନୁସ୍ୟୂତ ।



# ୧୬. ସୁଖୀ ହେବାର ଉପାୟ

ସଂସାରର ପଦାର୍ଥ ଉପରେ, ପ୍ରାଣୀମାନଙ୍କ ଉପରେ, ପରିସ୍ଥିତି ଉପରେ ତଥା ଅବସ୍ଥା ଉପରେ ଯେ ଯାବତ୍ ଭରସା ଏବଂ ଆଶା ରହିଛି, ସେ ଯାବତ୍ ଭଗବାନଙ୍କ ଉପରେ ବିଶ୍ୱାସ ହୁଏନାହିଁ । ସେହିପରି ସଂସାରର ଏହି ପଦାର୍ଥ ମିଳିଯାଉ, ଏ ପ୍ରକାର ସ୍ଥିତି ହୋଇଯାଉ, ଅମୁକ ବ୍ୟକ୍ତି ମୋ' ସହିତ ଏପରି ବାର୍ତ୍ତାଳାପ କରିବ, ଏପ୍ରକାର ଧାରଣା ଏବଂ ଏହି ଧାରଣାରୁ ସୁଖର ଆଶା ଏ ଯାବତ୍ ମନୁଷ୍ୟ ମନରେ ରହିଥାଏ; ସେ ଯାବତ୍ ଏହା ସତ୍ୟ ଯେ ତାହାର ଭଗବାନଙ୍କ ଉପରେ ବିଶ୍ୱାସ ନାହିଁ । ଭଗବତ୍ ବିଶ୍ୱାସୀ ପୁରୁଷ ଜଗତର ପରିସ୍ଥିତିକୁ ଖାତିର କରେନାହିଁ । ସେ ଜଗତର ପଦାର୍ଥରୁ ଏବଂ ଜଗତର ପ୍ରାଣୀମାନଙ୍କଠାରୁ ଏପରି ଆଶା ରଖେନାହିଁ । ଅନ୍ୟମାନଙ୍କର ଆଶା ତା'ଠାରେ ଯେ ପର୍ଯ୍ୟନ୍ତ ହୋଇଛି, ସେ ପର୍ଯ୍ୟନ୍ତ ପୂରା କରିଥାଏ, କିନ୍ତୁ ଅନ୍ୟଠାରେ ଆଶା ରଖନାହିଁ । ବ୍ୟବହାରରେ ଆମେ କଥାବାର୍ତ୍ତା ହେବା ଅଲଗା କଥା, କିନ୍ତୁ ଯଦି ଅନ୍ୟଠାରେ ଆଶା ହେବ, ତେବେ ଆଶା ପୂର୍ଣ୍ଣ ନହେଲେ ଦୁଃଖ ହେବ । ଏହା ଆଶାର କଷଟି, ଯଦି ଆମର କାହାଠାରୁ କୌଣସି ବସ୍ତୁର ଆଶା ନାହିଁ, କିନ୍ତୁ ମନରେ ଯଦି ବିପରୀତ ହୋଇଯିବାପରେ ଦୁଃଖ ହୁଏ, ତେବେ ବୁଝିବାକୁ ହେବ ଆଶା ଥିଲା । ଏହାର ବିପରୀତ ଭଗବାନଙ୍କ ଉପରେ ବିଶ୍ୱାସ ହେବାପରେ ଯେଉଁ ସ୍ଥିତି ପହଞ୍ଚିବ, ତାହା ମଙ୍ଗଳମୟୀ ହେବ । ଯେବେ ଏହିପରି ବିଶ୍ୱାସ ହୁଏ, ତେବେ ଦୁଃଖ ରହିବ ନାହିଁ । ଯଦି ଭଗବାନ ଚାହାଁନ୍ତି ତ ସ୍ଥିତି ଓଲଟି ଯିବ ଏବଂ ଯଦି ନଓଲଟିଲା ତେବେ ପୂର୍ବ ସ୍ଥିତି ଯାହାଥିଲା, ମନ ମାନୁ ନଥିଲେ ସୁଦ୍ଧା ତାହା ମୋ' ଜ୍ଞାନ ବୁଦ୍ଧିରେ ଅକଲ୍ୟାଣ କର ହେଲେ ହେଁ ତାହା ମଙ୍ଗଳମୟୀ, ଏହିପରି ବିଶ୍ୱାସ ଦୃଢ଼ ହୋଇଗଲେ, ଆଉ ଦୁଃଖ ରହିପାରିବ ନାହିଁ ।



# ୧୭. ନାମ ମହିମା

ତ୍ୱମେବ ମାତାଚ୍ ପିତା ତ୍ୱମେବ
ତ୍ୱମେବ ବନ୍ଧୁଷ୍ଚ ସଖା ତ୍ୱମେବ
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବ ଦେବ ।
(ଗର୍ଗ ସଂହିତା ଦ୍ୱାରିକାଖଣ୍ଡ- ୧୨/୧/୮)

ଭଗବାନଙ୍କ ନାମର ଅମିତ ମହିମା । ଶାସ୍ତ୍ରରେ ନାମର ଯାହା କୁହାଯାଇଛି ତଥା ସନ୍ଥ ମହାତ୍ମା ନାମ ସମ୍ବନ୍ଧରେ ଯେତେ ସବୁ ଗୁଣ ଗାନ କରିଛନ୍ତି ଏଥିରେ କୌଣସି ଅର୍ଥବାଦ ନାହିଁ । ଯେପରି ଭଗବାନଙ୍କ ମହିମା ଅବର୍ଣ୍ଣନୀୟ, ସେହିପରି ନାମ ମହିମା ଅନିର୍ବଚନୀୟ । ତାହା କୁହାଯାଇନପାରେ । ସ୍ୱୟଂ ଭଗବାନ୍ ମଧ୍ୟ ନିଜ ନାମର ଗୁଣକୁ ପାର କରି ପାରିନାହାଁନ୍ତି ।

"କହାଁ କହାଁ ନାମ ବଡ଼ାଇ । ରାମୁନ ସକହିଁ ନାମ ଗୁଣ ଗାଇ ।
(ରା.ଚମା. ୧/୨୬/୮)

ଭ୍ରମ ବଶତଃ ଲୋକେ ନାମ ଏବଂ ନାମୀକୁ ଦୁଇ ଭିନ୍ନ ତତ୍ତ୍ୱ ଏବଂ ନାମକୁ ନାମୀରୁ ଛୋଟ ବିଚାର କରିଥାଆନ୍ତି । ନାମର ମହାତ୍ମ୍ୟ ଅପାର, ଅସୀମ, ଅନନ୍ତ । ଯଦି କେହି ରାଜା ନିଜ ଧନର ସୀମା ଜାଣେ, ତେବେ ତାଙ୍କ ଧନ ସୀମିତ ମାନିନିଆଯିବ । କିନ୍ତୁ ଯଦି ସ୍ୱୟଂ ଧନର କଳଣା କରି ନପାରେ ଅର୍ଥାତ୍ ତାକୁ ଜଣାନାହିଁ ତା' ପାଖରେ କେତେଧନ ଅଛି, ତେବେ ତାଙ୍କ ଧନ ଅନନ୍ତ ଅସୀମ କୁହାଯିବ ଏବଂ ଏହା ବୁଝାଯିବ ଯେ ସ୍ୱୟଂ ରାଜା ମଧ୍ୟ ନିଜ ଧନର ପରିମିତି ଜାଣନ୍ତି ନାହିଁ । ଉପର୍ଯ୍ୟୁକ୍ତ ଦୃଷ୍ଟାନ୍ତ ପୂର୍ଣ୍ଣତଃ ଯୁକ୍ତି ସଂଗତ ନହେଲେ ମଧ୍ୟ ନାମ ମହିମା ବୁଝାଇବା ପାଇଁ ଉପଲକ୍ଷ୍ୟ ଦୃଷ୍ଟିରୁ ଯଥେଷ୍ଟ ।

ନାମ ଓ ନାମୀ ମଧ୍ୟରେ ଛୋଟବଡ଼ ବୁଦ୍ଧି ନକରିବା ଉଚିତ, ନାମୀ ନିଜ ନାମ ଦ୍ୱାରା ସୂଚୀତ ହୋଇଥାଆନ୍ତି, ନାମ ବିନା ନାମୀକୁ ଚିହ୍ନିବା ହୋଇପାରେ ନାହିଁ, ହୀରା ହାତରେ ଅଛି, ତା' ମୂଲ୍ୟର କଳ୍ପନା ମଧ୍ୟ ଅଛି, କିନ୍ତୁ ହାତରେ ହୀରା କି କାଚ ଏହାର ପରିଚୟ ନାହିଁ । ଘରେ ପରଶମଣି ଥାଇ ମଧ୍ୟ ତା'ର ପରିଚୟ ବିନା ମନୁଷ୍ୟ ଦରିଦ୍ର ହୋଇ ରହିଛି ।



# ୧୮. ମାତୃଗର୍ଭରେ ଜୀବ

ଭଗବାନ୍ କପିଳ ନିଜମାତା ଦେବହୂତିଙ୍କୁ କହୁଛନ୍ତି କି ମନୁଷ୍ୟ ଯୋନିକୁ ପ୍ରାପ୍ତ ଜୀବ ଯେବେ ମାତୃଗର୍ଭରେ ରହିଥାଏ, ତେବେ ସେ ଗର୍ଭବାସର ମହାନ କଷ୍ଟ ସହ୍ୟ କରିଥାଏ । ଏହି ସମୟରେ ଅଦୃଷ୍ଟର ପ୍ରେରଣାରେ ତା'ର ପୂର୍ବଜନ୍ମର ସ୍ମୃତି ତଥା ପୂର୍ଣ୍ଣଜ୍ଞାନ ରହିଥାଏ । ସେହି ଦେହାତ୍ମଦର୍ଶୀ ଜୀବ ଅତ୍ୟନ୍ତ ଭୟଭୀତ ହୋଇ ଭଗବାନଙ୍କୁ କୃପା ପ୍ରାର୍ଥନା ପୂର୍ବକ ସ୍ତୁତି କରିଥାଏ- ପ୍ରତିଜ୍ଞା କରି କହିଥାଏ ହେ ଭଗବାନ୍! ଏହି ଅତ୍ୟନ୍ତ ଦୁଃଖପୂର୍ଣ୍ଣ ଗର୍ଭାଶୟରେ ଯଦ୍ୟପି ମୁଁ ବଡ଼କଷ୍ଟରେ ରହିଛି, ତେବେ ବି ଏଠାରୁ ବାହାରକୁ ଆସି ସଂସାରମୟ ଅନ୍ଧକୂପରେ ପଡ଼ିବାକୁ ମୋ'ର ଆଦୌ ଇଚ୍ଛାନାହିଁ । କାରଣ ସେଠାକୁ ଯାଉଥିବା ଜୀବକୁ ଆପଣଙ୍କ ମାୟା ଘେରିଯାଏ, ସେହି ହେତୁ ତା' ଶରୀରରେ ଅହଂ ବୁଦ୍ଧି ତ ହୋଇଯାଏ, ଏହାର ପରିଣାମରେ ତାକୁ ପୁନଃ ସଂସାର ଚକ୍ରରେ ଘୂରିବାକୁ ହୋଇଥାଏ । ଅତଃ ମୁଁ ବ୍ୟାକୁଳତାକୁ ଛାଡ଼ି ହୃଦୟରେ ଶ୍ରୀବିଷ୍ଣୁଙ୍କ ଚରଣକୁ ସ୍ଥାପିତ କରି ବୁଦ୍ଧି ସହାୟତାରେ ନିଜକୁ ବହୁତ ଶୀଘ୍ର ଏହି ସଂସାର ରୂପ ସମୁଦ୍ରକୁ ପାର କରିନେବି । ଯଦ୍ୱାରା ମୋତେ ଅନେକ ପ୍ରକାର ଦୋଷଯୁକ୍ତ ଏ ସଂସାର ଦୁଃଖ ପୁନଃ ପ୍ରାପ୍ତ ହେବନାହିଁ ।

(ଭାଗବତ- ୩/୩୧/୨୦-୨୧)ର ଆଧାରରେ କୁହାଯାଇପାରେ- ଏହିପରି ଗର୍ଭସ୍ଥଜୀବ ଭଗବାନଙ୍କଠାରେ ପ୍ରତିଜ୍ଞା କରିଥାଏ । ଗର୍ଭୋପନିଷଦରେ ଜୀବର ପ୍ରତିଜ୍ଞା ବିସ୍ତାରିତ ଭାବେ ବର୍ଣ୍ଣିତ ।

ଆହୋ ଦୁଃଖବଧୌ ମଗ୍ନୋ ନପଶ୍ୟାମି ପ୍ରତିକ୍ରିୟାମ୍
ଯଦି ଯୋନ୍ୟାଃ ପ୍ରମୁଚ୍ୟେହଂ ତତ୍ପ୍ରପଦ୍ୟେ ମହେଶ୍ୱରମ୍ ।।

ଅର୍ଥାତ୍- ମୁଁ ଆଜି ଦୁଃଖ ସମୁଦ୍ରରେ ବୁଡ଼ିଅଛି । ରକ୍ଷା ପାଇବାର କୌଣସି ଉପାୟ ଦେଖୁନାହିଁ । ଯଦି ଏହି ଯୋନିରେ ମୁଁ ମୁକ୍ତ ହୋଇଯିବି, ଏହି ଗର୍ଭରୁ ବାହାରକୁ ଚାଲି ଆସିବି, ତେବେ ମହାନ୍ ଈଶ୍ୱରଙ୍କ ଶରଣ ଗ୍ରହଣ କରି ତାଙ୍କ ଭଜନ କରିବି ।

◆◆◆

# ୧୯. ଦୁଃଖରୁ ମୁକ୍ତି

ସଂସାରରେ ପ୍ରାୟ ସମସ୍ତ ପ୍ରାଣୀ ଦୁଃଖରେ ନିମଗ୍ନ । ଦୁଃଖ ଦୁଇ ପ୍ରକାର- (୧) ଲୌକିକ ଦୁଃଖ, (୨) ପାରଲୌକିକ ଦୁଃଖ । ଲୌକିକ ଦୁଃଖ ମଧ୍ଯ ତିନିପ୍ରକାର (୧) ଆଧିଭୌତିକ, (୨) ଆଧିଦୈବିକ, (୩) ଆଧ୍ୟାତ୍ମିକ । ମନୁଷ୍ୟ, ପଶୁପକ୍ଷୀ, କୀଟ ପତଙ୍ଗ ଆଦି ପ୍ରାଣୀଙ୍କ ଦ୍ୱାରା ଯେଉଁ ଦୁଃଖ ପ୍ରାପ୍ତ ହୁଏ ତାହା ଆଧିଭୌତିକ ଦୁଃଖ । ବାୟୁ, ଅଗ୍ନି, ଜଳ, ବୃଷ୍ଟି, ଦେଶ, କାଳ, ନକ୍ଷତ୍ର, ସୂର୍ଯ୍ୟ, ଚନ୍ଦ୍ରମା ଆଦି ଅଭିମାନୀ ଦେବତାମାନଙ୍କ ଦ୍ୱାରା ଯେଉଁ ଦୁଃଖ ପ୍ରାପ୍ତ ହୁଏ ତାହା ଆଧିଦୈବିକ ଦୁଃଖ । ଆଧ୍ୟାତ୍ମିକ ଦୁଃଖ ଦୁଇ ପ୍ରକାର ହୋଇଥାଏ, (୧) ଆଧି ଏବଂ (୨) ବ୍ୟାଧି । ଆଧିର ମଧ୍ଯ ଦୁଇ ଭେଦ (୧) ମନ- ବୁଦ୍ଧିରେ ପାଗଳାମି, ମୃଗୀ, ଉନ୍ମାଦ, ହିଷ୍ଟିୟା ଆଦି ରୋଗ (୨) କାମ, କ୍ରୋଧ, ଲୋଭ-ମୋହ, ମଦ- ମତ୍ସର, ରାଗ-ଦ୍ୱେଷ, ଈର୍ଷ୍ୟା-ଭୟ, ଛନ୍ଦ-କପଟ, ଅହଂତା-ମମତା ଆଦି ଆଧ୍ୟାତ୍ମିକ ବିଷୟର ହାନିକାରୀ ଦୁର୍ଗୁଣ । ଏ ସବୁକୁ ତଥା ଏହିପରି ଅନ୍ୟ ମାନସିକ ରୋଗକୁ 'ଆଧି' କୁହାଯାଏ । ଶରୀର ଏବଂ ଇନ୍ଦ୍ରିୟରେ ହେଉଥିବା ରୋଗକୁ 'ବ୍ୟାଧି' କୁହାଯାଏ । ପାରଲୌକିକ ଦୁଃଖ ମଧ୍ଯ ରହିଛି । ମୃତ୍ୟୁ ପରେ ପରଲୋକରେ ବା ପୁନଃ ଇହଲୋକରେ ଆସି ନାନା ପ୍ରକାର ଯୋନିରେ ଭ୍ରମଣ କରିବା, ପରମାତ୍ମାଙ୍କର ଯଥାର୍ଥ ଜ୍ଞାନରେ ଏ ସମସ୍ତ ପ୍ରକାର ଦୁଃଖର ସର୍ବଥା ଅଭାବ ହୋଇଥାଏ । ପରମାତ୍ମାଙ୍କୁ ପ୍ରାପ୍ତି ହେବାପରେ ଉପର୍ଯ୍ୟୁକ୍ତ ସମସ୍ତ ଦୁଃଖର ଅତ୍ୟନ୍ତ ଅଭାବ ହୋଇ ସବୁ ସମୟ ପାଇଁ ପରମ ଶାନ୍ତି ଏବଂ ପରମାନନ୍ଦ ପ୍ରାପ୍ତି ହୋଇଯାଏ ।



# ୨୦. ମନୁଷ୍ୟର ଅବସ୍ଥା ତ୍ରୟ

୧. ବାଲ୍ୟାବସ୍ଥା:- ଏହି ବାଲ୍ୟାବସ୍ଥା ଭୟର, ପରବଶର, ଦୀନତାର, ମନୋରଥର, ସଂକଟ ନିବାରଣରେ ଅସମର୍ଥତାର, ଦେଖା- ଅଦେଖା ବସ୍ତୁରେ ଲାଳସାର ଏବଂ ମୂଢ଼ ବୁଦ୍ଧିତ୍ୱ ଆଦି ଦୋଷର ବିଳାସ ଭବନ, ବାଲ୍ୟାବସ୍ଥା କାହାରି ପାଇଁ ମଧ୍ୟ ପୂର୍ଣ୍ଣ ସନ୍ତୋଷ ଦାୟୀ ହୋଇ ନଥାଏ ।

୨. ଯୁବାବସ୍ଥା:- ଭୋଗ ଭୋଗୀବାର ଉତ୍ସାହରେ ଅଥବା କାମରୂପ ପିଶାଚଦ୍ୱାରା ଦୂଷିତ ଚିତ୍ତ ହୋଇ ନରକରେ ପଡ଼ିବା ପାଇଁ ହିଁ ମନୁଷ୍ୟ ଯୌବନାରୂଢ଼ ହୋଇଥାଏ । ବିଷୟ ଚିନ୍ତନ ଏବଂ ଦୁର୍ଗୁଣ ଦୁରାଚାର ରୂପକ ଅନେକ ଦୋଷପୂର୍ଣ୍ଣ ନିନ୍ଦନୀୟ ଯୌବନକୁ ପାର ହେବା ଅତ୍ୟନ୍ତ କଠିନ । ବିନୟରେ ଅଳଙ୍କୃତ, ଶ୍ରେଷ୍ଠ ପୁରୁଷଙ୍କୁ ଆଶ୍ରୟ ଦେଉଥିବା, କରୁଣାରୁ ପ୍ରକାଶିତ ତଥା ଶମ, ଦମ, କ୍ଷମା ଦୟା ଆଦି ବିବିଧ ଗୁଣଯୁକ୍ତ ଉତ୍ତମ ଯୌବନ ଏହି ସଂସାରରେ ଦୁର୍ଲଭ ଯେପରି ଆକାଶରେ ବନ ।

୩. ସ୍ତ୍ରୀ ଶରୀର- କାମରୂପକୁ ବହନ କରି ମୂଢ଼ ଚିତ୍ତ ମାନବରୂପୀ ପକ୍ଷୀଙ୍କୁ ଭ୍ରମିତ କରିବା ପାଇଁ ସ୍ତ୍ରୀ ରୂପକ ଜାଲ ପକାଇଅଛି । ନାରୀର ସ୍ତନରେ, ନେତ୍ର, ନିତମ୍ବ, ଭୃଲତା ଉପରେ ସାରବସ୍ତୁ ନାମରେ କେବଳ ମାଂସ ହିଁ ରହିଛି । ତାହା ମଧ୍ୟ କିଛି ଦିନ ମଧ୍ୟରେ ଜୀର୍ଣ୍ଣ ଶୀର୍ଣ୍ଣ ହୋଇଯିବ । ହେ ସଂସାରର ମନୁଷ୍ୟ ! କାହିଁକି ଭ୍ରମ ପଛରେ ଦୌଡୁଛ ?

୪. ବୃଦ୍ଧାବସ୍ଥା- ଜରାବସ୍ଥା ଆସିଗଲେ ପରଲୋକର ଭୟ ଆଗରେ ଠିଆହୁଏ । ପୁନଃ ତୃଷ୍ଣା ବଢ଼ିଯାଏ । କେବେ ଦାନ୍ତ ଥାଏ ତ ଅନ୍ତ ନଥାଏ, କେବେ ଅନ୍ତଥାଏ ତ ଦାନ୍ତ ନାହିଁ । କେବେ ଦୁଇଟି ଯାକ ନଥାନ୍ତି । ଭୋଗର ଇଚ୍ଛା ପ୍ରବଳ ହୋଇଉଠେ । ଉପଭୋଗର ଅସମର୍ଥତାରେ ହୃଦୟ ଜଳିଯାଏ । ସବୁ ଦିଗରୁ ଉପହାସର ପାତ୍ର ହୋଇ ଜର୍ଜର ଶରୀର ମୃତ୍ୟୁର ଗ୍ରାସ ହୋଇଯାଏ । ସମସ୍ତ ଏଷଣାର ତିରସ୍କାର ହୋଇଯାଏ । ବୃଦ୍ଧାବସ୍ଥା ବହୁତ ଦୁଃଖ ରୂପ ହୋଇଥାଏ ।

(ଯୋଗବାଶିଷ୍ଠ ବୈରାଗ୍ୟ ପ୍ରକରଣ)



# ୨୧. ଭଗବତ୍ ପ୍ରାପ୍ତି

ଭଗବାନ୍ ସମଗ୍ର ଗୀତା କହି ଶୁଣାଇବା ପରେ ଅଷ୍ଟାଦଶ ଅଧ୍ୟାୟ ଅନ୍ତିମ ଭାଗରେ ନିଜର ଯଥାର୍ଥ ଜ୍ଞାନ ପ୍ରାପ୍ତିର ଉପାୟ ସୂଚାଇଛନ୍ତି । ଗୀତା ତ ଶୁଣାଇ ଦେଲେ ପୁନଃ ଆବଶ୍ୟକତା କ'ଣ ଥିଲା ଉପାୟ ବତାଇବାର ? ଉପାୟ ବତାଇବାର ତାତ୍‌ପର୍ଯ୍ୟ ଏହିକି କେବଳ ପଢ଼ିବା ଦ୍ୱାରା କାମହୁଏ ନାହିଁ ପଢ଼ି ଶୁଣିକରି ଏପରି କରିବାକୁ ପଡ଼ିବ, ତେବେ ଭଗବାନଙ୍କ ପରାଭକ୍ତି ମିଳିବ ଏବଂ ପରାଭକ୍ତି ମିଳିବା ପରେ ଭଗବତ୍ କୃପାରୁ ଯଥାର୍ଥ ଜ୍ଞାନ ହେବ । ଉପାୟ ଏହା-

ସମସ୍ତ ପାପ-ତାପ, ଛନ୍ଦ- ଛିଦ୍ର, ଦମ୍ଭ- ଦର୍ପର ଏବଂ ଏହିପରି ଅନ୍ୟାନ୍ୟ ଦୋଷର ଭାବନାକୁ ନାଶ କରି ବୁଦ୍ଧିକୁ ପରମ ଶୁଦ୍ଧ କର । ଏକାନ୍ତରେ ରହି ବୁଦ୍ଧିକୁ ସଂଜତକର, ପରିମିତ ଏବଂ ଶୁଦ୍ଧ ଆହାର କରି ଶରୀରକୁ ଶୋଧନକର, ମନବାଣୀ ଏବଂ ଶରୀର ଉପରେ ନିଜର ଅଧିକାର ସ୍ଥାପିତ କର, ଦୃଢ଼ ବୈରାଗ୍ୟ ଧାରଣକର, ନିତ୍ୟ ଭଗବାନଙ୍କ ଧ୍ୟାନ କର, ବିଶୁଦ୍ଧ ଧାରଣାରେ ଅନ୍ତଃକରଣର ନିୟମନ କର, ଶବ୍ଦାଦି ସମସ୍ତ ବିଷୟକୁ ତ୍ୟାଗକର, ରାଗଦ୍ୱେଷର ମୂଳଚ୍ଛେଦ କର, ଅହଂକାର, ବଳ, ଦର୍ପ, କାମ, କ୍ରୋଧ ଓ ପରିଗ୍ରହକୁ ତ୍ୟାଗ କର । ସବୁ ସ୍ଥାନରୁ ମମତାକୁ ହଟାଇ ନିଅ ଏବଂ ଏପରି କରି ଚିତ୍ତକୁ ସର୍ବଥା ଶାନ୍ତ କରିନିଅ, ତେବେ ବ୍ରହ୍ମ ପ୍ରାପ୍ତିର ଯୋଗ୍ୟ ହେବ । ଏହାପରେ ବ୍ରାହ୍ମୀଭୂତ ଅବସ୍ଥା, ଅଖଣ୍ଡ ପ୍ରସନ୍ନତା, ଶୋକ ଏବଂ ଅକାଂକ୍ଷାରୁ ରହିତ ସମ ସ୍ଥିତି ଏବଂ ସର୍ବଭୂତରେ ସମ ଏକାତ୍ମ ଭାବ ପ୍ରାପ୍ତି ହେବାପରେ, ତେବେ ଭଗବତ୍ ତତ୍ତ୍ୱର ଅର୍ଥାତ୍ ଭଗବାନ କିପରି, କ'ଣ ଏହି ଜ୍ଞାନ ହେବ ଏବଂ ତେବେ ଏହିପରି ଯଥାର୍ଥ ଜ୍ଞାନ ହେଲେ ତୁମେ ଭଗବାନଙ୍କ ଠାରେ ପ୍ରବେଶ କରିବ ।



# ୨୨. ଚିତ୍ତଶୁଦ୍ଧି

ସାଧକ ସମ୍ମୁଖରେ ଚିତ୍ତ ଶୁଦ୍ଧି ପ୍ରାଥମିକ ପ୍ରଶ୍ନ ଆସିଥାଏ । ଯେଉଁଠି ସଂସାର ବିଷୟର ଚର୍ଚ୍ଚାରୁ ଉପରକୁ ଉଠି ପରମାର୍ଥର ପରଲୋକର ପରମାତ୍ମାଙ୍କ ଚର୍ଚ୍ଚା ଆସିଥାଏ । ଚିତ୍ତଶୁଦ୍ଧିର ପ୍ରଶ୍ନ ସମ୍ମୁଖକୁ ଆସିଗଲା । ସମସ୍ତ ସଂପ୍ରଦାୟ, ସମସ୍ତ ସାଧନାରେ ଚିତ୍ତଶୁଦ୍ଧିର ଆବଶ୍ୟକତା ପ୍ରଥମ ଏବଂ ଅନିବାର୍ଯ୍ୟ ଆବଶ୍ୟକତା ସ୍ୱୀକାର କରାଯାଇଛି ।

ଆମ ଶରୀର ପଞ୍ଚକୋଷରେ ନିର୍ମିତ । (୧) ଅନ୍ନମୟ କୋଷ ଅର୍ଥାତ୍ ଦୃଶ୍ୟମାନ ଶରୀର, (୨) ପ୍ରାଣମୟ କୋଷ ଅର୍ଥାତ୍ କ୍ରିୟାଶକ୍ତି, (୩) ମନୋମୟ କୋଷ ଅର୍ଥାତ୍ ଇଚ୍ଛାଶକ୍ତି, (୪) ବିଜ୍ଞାନମୟ କୋଷ ଅର୍ଥାତ୍ ବିଚାର ଶକ୍ତି ଏବଂ (୫) ଆନନ୍ଦମୟ କୋଷ ଅର୍ଥାତ୍ ବ୍ୟକ୍ତିତ୍ୱର ଅନୁଭୂତି ।

ଆମକୁ ଯେ ପଞ୍ଚକୋଷ ଦେଇଛନ୍ତି ସେ ହିଁ ପରମାତ୍ମା । ସେହି ପରମାତ୍ମାଙ୍କୁ ଆମେ ପ୍ରାପ୍ତ କରିବା ଉଚିତ । ଏଥି ମଧ୍ୟରୁ ପ୍ରତ୍ୟେକ ପରମାତ୍ମାଙ୍କୁ ପ୍ରାପ୍ତ କରାଇ ପାରିବା ବିଧେୟ । କିନ୍ତୁ ଏଠାରେ ପ୍ରସଂଗ ହେଉଛି ଚିତ୍ତଶୁଦ୍ଧିର । କାରଣ ପରମାତ୍ମା ତ ନିତ୍ୟ ପ୍ରାପ୍ତ ସେ ଆମ ଭିତରେ ବସିଛନ୍ତି । ଚିତ୍ତର ମଳ, ଆବରଣ ବିକ୍ଷେପ ଆମେ ଦୂର କରିପାରିଲେ ପରମାତ୍ମାଙ୍କ ପ୍ରାପ୍ତି ତତ୍କାଳ ହୋଇପାରିବ । ଅତଏବ ଯେବେ ଆମେ କହିଥାଉଁ କି ଅମୁକ ସାଧନ ପରମାତ୍ମାଙ୍କୁ ପ୍ରାପ୍ତ କରାଇବାରେ ସମର୍ଥ, ତେବେ ଏହାର ଅର୍ଥ ହେଲା ତାହା ଚିତ୍ତକୁ ସମସ୍ତ ଦୋଷରୁ ଶୁଦ୍ଧ କରିଦେଲା ବାଲା ।

ଅନ୍ନମୟ କୋଷର ଶୁଦ୍ଧିପାଇଁ ଆହାର ଶୁଦ୍ଧି ସର୍ବାଦୌ ପ୍ରୟୋଜନ, ପ୍ରାଣଶକ୍ତିର ଶୁଦ୍ଧିପାଇଁ ଶୁଦ୍ଧ କର୍ମ କରିବା ଜରୁରୀ । ମନୋମୟ କୋଷ ଇଚ୍ଛାଶକ୍ତି-ଭାବନା ଶୁଦ୍ଧପାଇଁ ପବିତ୍ର ଏବଂ ଭଗବାନଙ୍କ ନାମଗୁଣ, ରୂପ ଲୀଳା ଆଦିର ଭାବନା, ବିଜ୍ଞାନମୟ କୋଷ, ବିଚାର ଶକ୍ତିର ପବିତ୍ରତା ପାଇଁ ବୈରାଗ୍ୟ ସାଧନ ଅର୍ଥାତ୍ ଶରୀର- ସଂସାରର ଅଳୀକତା ଚିନ୍ତନ, ଆନନ୍ଦମୟ କୋଷ ବ୍ୟକ୍ତିତ୍ୱର ଶୋଧନ ପାଇଁ ଅହଂକୁ ଏହି ରସ ସ୍ୱରୂପରେ ସଂବନ୍ଧ କରି ଦିଆଯିବା ଦ୍ୱାରା ତାହାକୁ ଆପଣାର କରିହେବ । ଚିତ୍ତ ଶୁଦ୍ଧିର ଏହା ସମ୍ୟକ ପଞ୍ଚାଙ୍ଗ ଶୁଦ୍ଧ ସାଧନ ଅବଶ୍ୟ କର୍ତ୍ତବ୍ୟ ।



# ୨୩. ସୁଶୀଳତା

ମନୁଷ୍ୟର ସବୁଠାରୁ ସୁନ୍ଦର ଆଭୂଷଣ ହେଉଛି 'ଶୀଳ' । ତତ୍ ସଂବନ୍ଧିତ ସୂକ୍ତି ମଧ୍ୟ ପ୍ରଚଳିତ- 'ଶୀଳଂ ପରଂଭୂଷଣମ୍' । ବ୍ୟକ୍ତି ମଧ୍ୟରେ ଶୀଳର ଆଗମ ତା'ର ଜନ୍ମ ଜନ୍ମାନ୍ତରର ତପସ୍ୟା ଏବଂ ସତ୍‌କର୍ମରୁ ହିଁ ପ୍ରାପ୍ତ ହୋଇଥାଏ । ଏହାର ମୂଳରେ ତ୍ୟାଗ- ଭାବନାର ସର୍ବୋପରି ଯୋଗ ଏବଂ ମହତ୍ତ୍ୱ ନିହିତ । 'ତ୍ୟାଗ'ର ତାତ୍ପର୍ଯ୍ୟ ବିକାର- କାମ, କ୍ରୋଧ, ମୋହ, ମଦ, ଲୋଭ ଏବଂ ମତ୍ସର ତ୍ୟାଗରୁ ହିଁ ହୋଇଥାଏ । ଯଦ୍ୟପି ଯେ ଷଡ଼ ବିକାର ମାନବ ମନ ଏବଂ ତା'ର ଶରୀରରେ ଆବାସ- ନିବାସ କରି ରହିଅଛି । ଏଣୁ ଏହି ବିକାରକୁ ଛାଡ଼ିବା ଦୁଷ୍କର; ତଥାପି ମନୁଷ୍ୟ ପ୍ରଯତ୍ନ ଜାରି ରଖିବା ଉଚିତ ଯେ ଯେ ବିକାର ବ୍ୟକ୍ତିର ମୁଣ୍ଡ ଉପରେ ଚଢ଼ି ନଯାଉ କିମ୍ବା ତା' ଉପରେ ସବାର ହୋଇ ନଯାଉ । ଏଥିପାଇଁ ଆବଶ୍ୟକ କି ବ୍ୟକ୍ତିର ଅନୁରାଗ ଆତ୍ମଦର୍ଶନ ଦିଗରେ ହେଉ, ପ୍ରଭୁଙ୍କ ପ୍ରତି, ଇଷ୍ଟଙ୍କ ପ୍ରତି ପରମାତ୍ମାଙ୍କ ପ୍ରତି ଭକ୍ତି ହେଉ । ପ୍ରଭୁଙ୍କ ପ୍ରତି ପ୍ରେମ ହେବାଦ୍ୱାରା ଷଡ଼ ବିକାର ସହଜରେ ପଳାୟନ କରିଥାଆନ୍ତି । (ରା.ଚ.ମା.୫/୪୭-୧-୨)ରେ କୁହାଯାଇଛି-

ତବ ଲଗି ହୃଦୟଁ ବସନ ଖଳ ନାନା । ଲୋଭ ମୋହ ମତ୍ସର ମଦ ମାନା ॥
ଜବ ଲାଗି ଉର ନବସତ ରଘୁନାଥା । ଧରେଁ ଚାପ ସାୟକ କଟି ଭାଥା ॥
ମମତା ତରୁନ ତମୀ ଅଁଧି ଆରୀ । ରାଗ ଦ୍ୱେଷ ଉଲୁକ ସୁଖକାରୀ ॥
ତବ ଲାଗି ବସତି ଜୀବ ମନ ମାହୀଂ । ଜବ ଲଗି ପ୍ରଭୁ ପ୍ରତାପ ରବି ନାହିଁ ॥

ଶୀଳ ଜନସେବା, ସମାଜସେବା, ରାଷ୍ଟ୍ରସେବା, ଦେଶ ସେବା ପ୍ରାଣୀ ସେବାରୁ ହିଁ ସମାବିଷ୍ଟ ହୋଇଥାଏ । ସେବା ନାହିଁ ତ ଶୀଳ ନାହିଁ । ସେବା- ଭାବନା ନହେଲେ ସ୍ୱାର୍ଥ ଜାଗିଉଠେ । ଧୀରେଧୀରେ ସେହି ସ୍ୱାର୍ଥ ବ୍ୟକ୍ତି ଉପରେ ସବାର ହୋଇଥାଏ ଏବଂ ମାୟା ଜାଲରେ ବ୍ୟକ୍ତି ଆବଦ୍ଧ ହୋଇଥାଏ । ମନୁଷ୍ୟ ମାତ୍ରକେ ଆପଣା କଲ୍ୟାଣ ନିମିତ୍ତ ଶୀଳ, ସୌଜନ୍ୟ ଭାବ ତଥା ସଦାଚାରକୁ ନିଷ୍ଠାର ସହ ଧାରଣ କରିବା ବିଧେୟ ।



# ୨୪. ଅଭିମାନ

ମତ କର ତୁ ଅଭିମାନରେ ବଂଦେ ମତ କର ତୁ ଅଭିମାନ
ଝୁଠୀ ତେରୀ ଶାନରେ ବନ୍ଦେ ଝୁଠୀ ତେରୀ ଶାନ ॥

ଉପର୍ଯ୍ୟୁକ୍ତ ପଂକ୍ତିରେ ମନୁଷ୍ୟଙ୍କୁ ଚେତାବନୀ ଦିଆଯାଇଛି କି ନିଜର କିଛି ବିଶେଷଣ, ଗୁଣ, ରୂପ, ଧନ ଆଦିରେ ଅଭିମାନ, ଅହଙ୍କାର କରିବା ଅନୁଚିତ ।

ଅଭିମାନ, ଘମଣ୍ଡ, ଦର୍ପ, ଗର୍ବ, ଦମ୍ଭ, ଅହଙ୍କାର ଏ ସମସ୍ତ ଶବ୍ଦ ପ୍ରାୟ ସମ ପର୍ଯ୍ୟାୟବାଚୀ । 'ଅହଂ କରୋମିତି ଅହଂକାରଃ' । ଅର୍ଥାତ୍ ମୁଁ ହିଁ ସବୁ କିଛି କରୁଛି ମନରେ, ଏହି ଭାବ ରଖିବା ହିଁ ଅହଙ୍କାରକୁ ଜନ୍ମଦିଏ । ଅଭିମାନ ଗ୍ରସ୍ତ ବ୍ୟକ୍ତି ସର୍ବଦା ନିଜକୁ ବଡ଼, ଶ୍ରେଷ୍ଠ, କୁଶଳ, ଯୋଗ୍ୟ ଏବଂ ସର୍ବଗୁଣସଂପନ୍ନ ବୁଝିଥାଏ । ଅପରପକ୍ଷେ ଅନ୍ୟକୁ ହେୟ, ହୀନ ଅଥବା ଛୋଟ ମାନିଥାଏ । ଅଭିମାନୀ ବ୍ୟକ୍ତି ସ୍ୱୟଂକୁ ହିଁ କର୍ତ୍ତା- ଧର୍ତ୍ତା ମାନିଥାଏ । 'ମୁଁ', 'ମୋର' (ମୋରପଣିଆ)ର ଭାବନା ଯେବେ ଅତ୍ୟଧିକ ହୋଇଯାଏ, ତେବେ ତା'ର ପତନ ମଧ୍ୟ ପ୍ରାରମ୍ଭ ହୋଇଯାଏ । ବ୍ୟକ୍ତି ଅନେକ ପ୍ରକାର ଶୋକ-କ୍ଲେଶ ଏବଂ ଦୁଃଖ ଭୋଗୀଥାଏ । ଅଭିମାନୀ ବ୍ୟକ୍ତି ଅନ୍ୟକୁ ନିଜର କଟୁ, ଅସହ୍ୟ ବାଣୀରେ ଆଘାତ କରିଥାଏ । ତାକୁ ମାନସିକ ରୂପେ ପ୍ରତାଡ଼ିତ କରି କଷ୍ଟ ପହଞ୍ଚାଇ ଥାଏ । ଅଭିମାନର ନିଶାରେ ସେ ଉଚିତ ଅନୁଚିତ ବିଚାର ନକରି ଲୋକଙ୍କୁ ଅପମାନ କରିବାରେ ଲାଗେ । ନିଜର ଦୁର୍ବ୍ୟବହାର ପ୍ରତି ପାଶ୍ଚାତ୍ତାପ ମଧ୍ୟ କରେ ନାହିଁ । କ୍ଷମା ମଧ୍ୟ ମାଗେ ନାହିଁ, କାରଣ ସେ ନିଜକୁ ବଡ଼ ମାନିଥାଏ । ନିଜକୁ ବଡ଼ ଭାବିବାର ଭାବନା ଯେପରି ବୃଦ୍ଧି ହୁଏ, ସେହି କ୍ରମରେ ସେ ବ୍ୟକ୍ତିର ପ୍ରତିଷ୍ଠା ନ୍ୟୂନହେବାରେ ଲାଗିଥାଏ ଏବଂ ତା' ସହିତ ଦୁର୍ଗୁଣର ସମାବେଶ ହୋଇଥାଏ । ଅତଏବ ଅଭିମାନରୁ ଦୂରରେ ରୁହ । ପରମାତ୍ମାଙ୍କୁ ନିତ୍ୟ ପ୍ରାର୍ଥନା କର ଏବଂ ଦୟା, କ୍ଷମା, ପ୍ରେମ, ତ୍ୟାଗ ପରି ସଦ୍‌ଗୁଣ ଧାରଣ କର ।



# ୨୫. ଦୈବୀ ସଂପଦ ଋଜୁତା

ଋଜୁତା ଅର୍ଥାତ୍ ସରଳତା ହେଉଛି ଦୈବୀ ସଂପତ୍ତି । ଏହା ଏପରି ଏକ ଗୁଣ, ଯାହାକୁ ସମାଜରେ ସଦୈବ ଆକାଂକ୍ଷୀତ ହୋଇଥାଏ । ମନୁଷ୍ୟ ପଶୁତାର ବଳୟ ମଧ୍ୟରୁ ନିଷ୍କ୍ରାନ୍ତ ହୋଇ ମନୁଷ୍ୟତାର ସୀମା ସ୍ପର୍ଶ କରିଥାଏ । ଏହି ହେତୁ ଏହା ମାନବତା ରୂପୀ ଶିଖରରେ ଅଧିରୋହଣର ସୋପାନ ସ୍ୱରୂପ । ଗୀତା ଅନୁସାରେ ଏହା ଶାରୀରିକ ତପ ଏବଂ ଜ୍ଞାନୀର ସ୍ୱାଭାବିକ କର୍ମ । ଋଜୁତା ଯୋଗର ଦିଗ କ୍ରିୟାତ୍ମକ ବ୍ୟବହାର । ଏହା ଏପରି ଏକ ଜ୍ଞାନ ଯାହାକୁ ସାଧୁ ସନ୍ଥଙ୍କ ସଂଗତିରୁ ଜାଣି ଜୀବନରେ ପ୍ରତିଫଳିତ କରାଯାଏ । କୃତ୍ରିମତାର ଅଭାବ ହିଁ ଋଜୁତା, ଋଜୁତା ଆବରଣ ଅସ୍ୱୀକୃତି ଏବଂ ପ୍ରବଞ୍ଚନାରୁ ବିରତି । କପଟାଚରଣ, ଧୋକାବାଜି, ମିଥ୍ୟା ଧମକ, ମିଥ୍ୟାଡ଼ମ୍ବର ଆଦି ଏ ସମସ୍ତ ଋଜୁତା, ସରଳତାର ସର୍ବଥା ବିରୋଧୀ । ଏହା ମାୟାର ପରିତ୍ୟାଗ, କାରଣ ମାୟା ମିଥ୍ୟାତ୍ୱ ତଥା ବିଭ୍ରମ; ଅହଂର ପରିତୁଷ୍ଟି ହେତୁ ବିସ୍ତାରିତ ଜାଲ । ବସ୍ତୁତଃ ମନ, ବାଣୀ ଓ କର୍ମର ଏକ ରୂପତା ଋଜୁତାର ପ୍ରମୁଖ ଲକ୍ଷଣ । ମହାତ୍ମା ତାକୁ କୁହାଯିବ ଯାହା ତାଙ୍କ ମନରେ ହୋଇଥାଏ, ତାହାକୁ ସେ ବାଣୀରେ ଉଚ୍ଚାରଣ କରନ୍ତି ଏବଂ କାର୍ଯ୍ୟରେ ତାକୁ ହିଁ ପରିଣତ କରିଥାଆନ୍ତି । ଦୁରାତ୍ମାଙ୍କର ଆଚରଣ ଏହାର ବିପରୀତ । ଶାସ୍ତ୍ରରେ କୁହାଯାଇଛି–

ମନସ୍ୟେକଂ ବଚସ୍ୟେକଂ କର୍ମଣ୍ୟେକଂ ମହାତ୍ମନାମ୍
ମନସ୍ୟନ୍ୟତ୍ ବଚସ୍ୟନ୍ୟତ୍ କର୍ମଣ୍ୟନ୍ୟତ୍ ଦୁରାତ୍ମନାମ୍ ॥

ମନର ସରଳତାର ଅଭିପ୍ରାୟ ହେଉଛି ମନରେ ତାହା ଭାବନ୍ତି ଯାହା ଶୁଭ ମଂଗଳମୟ ଏବଂ କଲ୍ୟାଣକାରୀ ହୋଇଥାଏ । ଯାହାକୁ ଆମେ ଜୀବନ ବ୍ୟବହାରରେ ରୂପାୟିତ କରି ଅନ୍ତିମ ପରିଣତି ଦେଇ ପାରିବା ।

ସରଳତା ମାନବର ଅପେକ୍ଷିତ ଗୁଣ । ଏହା ବିନା ଆଉ କିଛି ହୋଇପାରେ କିନ୍ତୁ ମନୁଷ୍ୟ କହିବାର ଅଧିକାରୀ କଦାପି ନୁହେଁ । ସରଳତା ଦ୍ୱାରା ହିଁ ତାହାର ଜୀବନଯାତ୍ରା ପୂର୍ଣ୍ଣ ହେବା ଉଚିତ । ସମାଜର ଏହା ହିଁ ଆକାଂକ୍ଷା ।



# ୨୬. ଭଲ-ମନ୍ଦ

ନିଜ ମଧ୍ୟରେ ଭଲର ଅଭିମାନ ହେଲେ ଅନ୍ୟଠାରେ ଖରାପ ଦେଖିଥାଏ । ଅନ୍ୟଠାରେ ଖରାପ (ଦୋଷ) ଦେଖିବା ଦ୍ୱାରା ନିଜ ମଧ୍ୟରେ ଭଲର ଅଭିମାନ ଆସିଥାଏ । ଏଣୁ ଅନ୍ୟର ଦୋଷ ଦେଖନାହିଁ ଏବଂ ନିଜ ମଧ୍ୟରେ ଭଲ (ଗୁଣ)ର ଅଭିମାନ ମଧ୍ୟ କରନାହିଁ ।

ଭଲ କରିବା ଯେତେ ଆବଶ୍ୟକ ନୁହେଁ, ଯେତେ ଖରାପ (ଦୋଷ)କୁ ତ୍ୟାଗ କରିବା ଆବଶ୍ୟକ । ଭଲ କରିବା ଦ୍ୱାରା କେବଳ ସମାଜର ହିତ ହୋଇଥାଏ, କିନ୍ତୁ ଖରାପ ନକରିବା ଦ୍ୱାରା ବିଶ୍ୱର ହିତ ହୋଇଥାଏ । ଯଦି ଭିତରୁ ଖରାପ୍ରଭାବ ଦୂର ନହେଲା ଏବଂ ବାହାରେ ଭଲ କରୁଛ, ତେବେ ବୁଝ ଯେ ଅଭିମାନ ସୃଷ୍ଟି ହେବ, ଯାହା ଖରାପଠାରୁ ଅଧିକ ଭୟଙ୍କର । ଦ୍ୱିତୀୟ କଥା ହେଲା ଭଲ କରିବାର ଅଭିମାନ ତେବେ ସୃଷ୍ଟି ହୁଏ, ଯେବେ ଭିତରେ କିଛି ନା କିଛି ଖରାପ ରହିଥାଏ । ଏଣୁ ଦୋଷ ରହିତ ହୋଇ ଭଲ କରିବା ଉଚିତ ।

ଖରାପ (ଦୋଷ, ଦୁର୍ଗୁଣ) ରହିତ ହେବାର ୬ଗୋଟି ଉପାୟ (୧) କାହାରିକୁ ଖରାପ ବୋଲି ଧରିନିଅ ନାହିଁ । (୨) କାହା ପ୍ରତି ଖରାପ କର ନାହିଁ । (୩) କାହାରି ପ୍ରତି ଖରାପ ଭାବନା ରଖ ନାହିଁ, (୪) କାହାରି ଖରାପ ଦେଖ ନାହିଁ, (୫) କାହାରି ଖରାପ ଶୁଣ ନାହିଁ ଏବଂ (୬) କାହାର ଖରାପ କୁହ ନାହିଁ । ଏହି ଛ'ଟି ନିୟମ ପାଳନରେ ଆମେ ମନ୍ଦ ରହିତ ହୋଇଯିବା, ମନ୍ଦ ରହିତ ହୋଇଗଲେ ଭଲ ଆପଣା ଛାଏଁ ଆସିଯିବ, କାରଣ ଭଲ ହେଉଛି ଆମର ସ୍ୱରୂପ ।

ନିଜର ପତନ ପାଇଁ ଅଭିମାନ ଠାରୁ ଆଉ କିଛି ବଡ଼ ଦୁର୍ଗୁଣ ନାହିଁ ଏବଂ ଉତ୍‌ଥାନ ପାଇଁ ନମ୍ରତାଠାରୁ ଆଉ କୌଣସି ଶ୍ରେଷ୍ଠ ଗୁଣ ନାହିଁ ।

**ଆଗମୋଽପଃ ପ୍ରଜା ଦେଶଃ କାଳ କର୍ମଚ୍‌ ଜନ୍ମଚ୍‌**
**ଧ୍ୟାନଂ ମନ୍ତ୍ରୋଽଥ ସଂସ୍କାରୋ ଦଶୈତେଗୁଣ ହେତବଃ ।**

(ଶ୍ରୀମଦ୍‌ ଭା.୧୧/୧୩/୪)

ଶାସ୍ତ୍ର, ଜଳ, ପ୍ରଜା, ଦେଶ, ସମୟ, କର୍ମ, ଜନ୍ମ, ଧ୍ୟାନ, ମନ୍ତ୍ର ଓ ସଂସ୍କାର ଏହି ଦଶ କଥା ଉପରେ ବିଶେଷ ଧ୍ୟାନ ରଖିବା ଉଚିତ । ଏହି ଦଶ ତତ୍ତ୍ୱ ସତ୍ତ୍ୱ ରଜ ତମ ଭେଦରେ ନ୍ୟୁନାଧିକ ହୋଇଥାଏ ।



# ୨୭. ଈଶ୍ୱର ଏବଂ ସଂସାର

ପିତା ହିଁ ପୁତ୍ର ରୂପରେ ଜନ୍ମ ହୋଇଥାଏ । ସେହିପରି ଭଗବାନ ହିଁ ସଂସାର ରୂପରେ ପ୍ରକଟ ହୋଇଥାଆନ୍ତି । ଯେପରି ବ୍ରାହ୍ମଣର ପୁତ୍ର ବ୍ରାହ୍ମଣ ହୋଇଥାଏ, ସେହିପରି ଭଗବାନଙ୍କ ଠାରୁ ଉତ୍ପନ୍ନ ସମସ୍ତ ଦୃଶ୍ୟାଦୃଶ୍ୟ ଭଗବାନଙ୍କ ରୂପ ହୋଇଥାଏ । ଭଗବାନଙ୍କର ସବୁଠାରୁ ଉତ୍‌କୃଷ୍ଟ ରୂପ କିଏ (କିପରି) ? ସବୁଠାରୁ ସୁନ୍ଦର ରୂପ ହେଉଛି ସଂସାର । ସବୁ କିଛି ଭଗବାନଙ୍କ ସ୍ୱରୂପ । ଏତିକି କଥା ମାତ୍ର ମାନି ନେଲେ ଆପଣଙ୍କର ଏଠାର ଯାତ୍ରା ସଫଳ ହୋଇଗଲା । ଏଥିପାଇଁ ଶ୍ରବଣ ମନନ ଆଦି କିଛି କରିବାକୁ ହେବ ନାହିଁ । ଭଗବାନ ସୁଲଭ କିନ୍ତୁ ମହାତ୍ମା ଦୁର୍ଲଭ । ସମସ୍ତଙ୍କଠାରେ ଭଗବାନଙ୍କୁ ଦେଖ । ପୁନଃ ଭଗବାନ ଛପି ପାରିବେ ନାହିଁ । ଏହି କଥା ମଧ୍ୟ ଭଗବାନଙ୍କ କୃପାରେ ମିଳିଥାଏ; କାରଣ ଆପଣଙ୍କ ମନରେ କ'ଣ ଥିଲା କି ? କିମ୍ବା ମୋ' ମନରେ ଥିଲା, ଭଗବାନ ମନରେ ଦେଇ ଅଛନ୍ତି । ଏହା ଭଗବାନଙ୍କର ହୃଦୟର ବାଣୀ ।

× × × × ×

ବାସ୍ତବରେ ସଂସାର ନାହିଁ ପରମାତ୍ମା ଅଛନ୍ତି । କେବଳ ଏତିକି ସ୍ମରଣ କରିବା ପ୍ରୟୋଜନ । ସଂସାର ତ ପ୍ରତିକ୍ଷଣ ବଦଳୁଅଛି । କିନ୍ତୁ କିଏ ତା' ମଧ୍ୟରେ ରହି ଅର୍ଥାତ୍ ପରିବର୍ତ୍ତନଶୀଳ ମଧ୍ୟରେ ରହି ଅପରିବର୍ତ୍ତିତ ରହିଛି, ଅର୍ଥାତ୍ କେବେ ବଦଳୁନାହିଁ । ସଂସାର ଏ ଯାବତ୍ କାହାରିକୁ ପ୍ରାପ୍ତ ହୋଇନାହିଁ, ପ୍ରାପ୍ତ ହୋଇ ନପାରେ । ଏଥିରେ ଭ୍ରମ ହେଉଛି ଯେ ଯାହା ଅପ୍ରାପ୍ୟ ତାକୁ ପ୍ରାପ୍ତ ମାନି ନିଆଯାଇଛି ଏବଂ ଯେ ପ୍ରାପ୍ତ ତାକୁ ଅପ୍ରାପ୍ତ ମାନିନେବା । ପରମାତ୍ମାଙ୍କୁ ଅପ୍ରାପ୍ତ ମାନି ନେଇଛ, ଏଥିପାଇଁ ଯେ ତାକୁ ପ୍ରାପ୍ତ କରିବାକୁ ପଡ଼ିଥାଏ, ସଂସାରକୁ ପ୍ରାପ୍ତ ମାନିନେଲ ଏଥିପାଇଁ ତାକୁ ଦୂର କରିବାକୁ ପଡ଼ିଥାଏ ।



# ୨୮. ମାତୃ ଦୋବୋ ଭବ

ଉପାଧ୍ୟାୟାନ୍ ଦଶାଚାର୍ଯ୍ୟ ଆଚାର୍ଯ୍ୟାଣାଂ ଶତଂପିତା ।
ସହସ୍ରଂଷ୍ଟୁ ପିତୃନ୍ ମାତା ଗୌରବେଣା ତିରିଚ୍ୟତେ ॥

(ମନୁ ୨/ ୧୪୫)

ଦଶ ଉପାଧ୍ୟାୟଙ୍କଠାରୁ ଶ୍ରେଷ୍ଠ ଏକ ଆଚାର୍ଯ୍ୟ ଏବଂ ଶତ ଆଚାର୍ଯ୍ୟଙ୍କ ଠାରୁ ପିତା ଶ୍ରେଷ୍ଠ ଏବଂ ପିତାଙ୍କଠାରୁ ସହସ୍ର ଗୁଣରେ ଅଧିକ ମାତା । ମାତାଙ୍କୁ ଏହିପରି ବିଶିଷ୍ଟ ଗୌରବ ପ୍ରଦାନ କରି ମହିମାମଣ୍ଡିତ କରାଯାଇଛି । ଏହି ଗୌରବ ମୂଳରେ ମାତାଙ୍କ ତ୍ୟାଗ ଓ ତପସ୍ୟା ଲୁଚି ରହିଛି । ମାତା ନିଜ ଶିଶୁଙ୍କୁ ଦିନ ରାତି ସେବା ଯତ୍ନ କରିଥାଆନ୍ତି, କିନ୍ତୁ କେବେ ବିରକ୍ତି ପ୍ରକାଶ କରେନାହିଁ । ସେ କେବେ କହେନାହିଁ ଶିଶୁମାନଙ୍କର ପାଳନ ପୋଷଣ କରିଅଛି, ଅଥବା ସେମାନଙ୍କ ପାଇଁ କେତେ ଯାତନା ସହିଛି । ତ୍ୟାଗର ମୂର୍ତ୍ତି ମାତା ସଦା କହେ କି ସେ ତ ଶିଶୁଙ୍କ ପାଇଁ କିଛି ବି କରିନାହିଁ । ଏହାର କାରଣ ହେଉଛି ମାତାଙ୍କ ହୃଦୟରେ ଶିଶୁଙ୍କ ପ୍ରତି ଅସୀମ ବାତ୍ସଲ୍ୟ ପ୍ରେମ ସଂଗୁପ୍ତ ହୋଇ ରହିଛି । ସୁତରାଂ ତାକୁ ଲାଗେ କି ସେବା କରିବା ଦ୍ୱାରା ତାକୁ କୌଣସି କଷ୍ଟ ହୋଇନାହିଁ । ମାଆର ପ୍ରେମ ଏପରି ଯେ ତା'ର ସମସ୍ତ ଶିଶୁ ଯେ ଯାବତ୍ ଭୋଜନ ନ କରିଥାଆନ୍ତି ସେ ଭୋଜନ କରିପାରେ ନାହିଁ । ଯଦି ତା' ପାଇଁ କିଛି ବଳକା ନ ହେଲା ତାକୁ ସେ ଅତ୍ୟନ୍ତ ଆନ୍ତରିକ ସୁଖ ଅନୁଭବ କରେ । ସେଥିପାଇଁ ତା'ର ଅଭିଯୋଗ କିମ୍ବା ବିରକ୍ତି ନଥାଏ । ଏହା ହିଁ ମାତାର ମାତୃତ୍ୱ, ଯାହା ତାକୁ ସମସ୍ତ ସଂପର୍କରୁ ଉର୍ଦ୍ଧ୍ୱରେ ସ୍ଥାପିତ କରିଅଛି ।

ତୈତ୍ତିରୀୟୋପନିଷଦରେ ପ୍ରଥମରୁ କୁହାଯାଇଛି 'ମାତୃଦେବୋ ଭବ' । ଏହାପରେ 'ପିତୃ ଦେବୋ ଭବ' ଏବଂ 'ଆଚାର୍ଯ୍ୟ ଦୋବୋ ଭବ'ର କଥା କୁହାଯାଇଛି । ଯଦ୍ୱାରା ସ୍ପଷ୍ଟ ହୁଏକି ମାତାଙ୍କ ସ୍ଥାନ ସର୍ବୋପରି, ଜ୍ଞାନ ଦେବାର ପ୍ରଥମ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ମାତାଙ୍କୁ ହିଁ ସମର୍ପିତ । କେବଳ ମାନବ ଶିଶୁ ନୁହେଁ, ମାନବେତ୍ତର ପଶୁ, ପକ୍ଷୀ, ଜଳଚର ପ୍ରାଣୀ ମଧ୍ୟ ମାତାଠାରୁ ପ୍ରଥମ ଶିକ୍ଷା ଲାଭ କରିଥାନ୍ତି । ସୁତରାଂ ମାତାଙ୍କ ସହ ଅନ୍ୟ କାହାରି ତୁଳନା ହୋଇ ନପାରେ । ସେ କେବଳ ତାଙ୍କ ସହ ତୁଳନୀୟ ।



# ୨୯. କ୍ଷମା

କ୍ଷମା ଧର୍ମଃ କ୍ଷମା ଯଜ୍ଞଃ କ୍ଷମା ବେଦାଃ କ୍ଷମା ଶ୍ରୁତମ୍
ଯ ଏତଦେବଂ ଜାନାତି ସ ସର୍ବଂ କ୍ଷନ୍ତୁଂ ମର୍ହତି ॥
କ୍ଷମା ବ୍ରହ୍ମ କ୍ଷମା ସତ୍ୟଂ କ୍ଷମା ଭୂତଂ ଚ ଭାବି ଚ
କ୍ଷମା ତପଃ କ୍ଷମାଶୌଚଂ କ୍ଷମୟେଦଂ ଧୃତଂ ଜଗତ୍ ॥

(ମହାଭା. ବନ. ୨୯/୩୬-୩୭)

ଅର୍ଥାତ୍ କ୍ଷମା ହେଉଛି ଧର୍ମ, କ୍ଷମା ଯଜ୍ଞ, କ୍ଷମା ବେଦ ଏବଂ କ୍ଷମା ଶାସ୍ତ୍ର । ଯେ ଏହି ପ୍ରକାର ଜାଣେ, ସେ ସବୁକିଛି କ୍ଷମା କରିବାର ଯୋଗ୍ୟ ହୋଇଯାଏ । କ୍ଷମା ହେଉଛି ବ୍ରହ୍ମ, କ୍ଷମା ସତ୍ୟ, କ୍ଷମା ଭୂତ (ଅତୀତ), କ୍ଷମା ଭବିଷ୍ୟତ, କ୍ଷମା ତପ ଏବଂ କ୍ଷମା ଶୌଚ, କ୍ଷମା ସଂପୂର୍ଣ୍ଣ ଜଗତକୁ ଧାରଣ କରି ରଖିଛି ।

କ୍ଷମା ଶବ୍ଦର ଅର୍ଥ କ୍ଷମତା ମଧ୍ୟ ହୋଇପାରେ । ଶକ୍ତିସଂପନ୍ନ ଏବଂ କ୍ଷମତାରେ ଯୁକ୍ତ ହେବା ପରେ ମଧ୍ୟ ଅପକାରକାରୀକୁ କ୍ଷମା କରି ଦେବା ହିଁ କ୍ଷମା । ନିର୍ବଳ ଏବଂ ଅଶକ୍ତ ବ୍ୟକ୍ତି ଭଲା ଅନ୍ୟକୁ କ'ଣ କ୍ଷମା କରି ପାରିବ ? କ୍ଷମାର ଅର୍ଥ ଧରିତ୍ରୀ ଏବଂ ବୃକ୍ଷ ମଧ୍ୟ ହୋଇଥାଏ । ଧରିତ୍ରୀ ସମସ୍ତ ପ୍ରକାର ମନୁଷ୍ୟ ଭଲ- ମନ୍ଦ, ସଜ୍ଜନ- ଦୁର୍ଜନ, ଧର୍ମୀ- ଅଧର୍ମୀ ଆଦିଙ୍କର ଯାବତୀୟ କର୍ମ ସହଜ କରିଥାଏ, ଏହି ହେତୁ ତାହାକୁ କ୍ଷମା କୁହାଯାଏ । ସେହିପରି ବୃକ୍ଷ ମଧ୍ୟ ଶୀତ- ଉଷ୍ଣ, ବର୍ଷାକୁ ସହ୍ୟ କରି ଭେଦଭାବ ନକରି ନିଜର ସ୍ୱାଦିଷ୍ଟ ଫଳ ଦେଇ ପଥିକକୁ ଆରାମ ଦେଇଥାଏ । ପରହିତରେ ଆପଣାର ପୂରା ଜୀବନ ଅର୍ପଣ କରିଦିଏ । ଏହି ଗୁଣ ହେତୁ ବୃକ୍ଷକୁ ମଧ୍ୟ କ୍ଷମା କହିବା ସାର୍ଥକ । କ୍ରୋଧର କାରଣ ହେବାପରେ ମଧ୍ୟ କ୍ରୋଧ ଉତ୍ପନ୍ନ ନକରିବା, ସହନଶୀଳତା ବଜାୟ ରଖିବା, ମନକୁ ଶାନ୍ତ ରଖିବା ହିଁ କ୍ଷମା । ହିଂସାରୁ ହିଂସା ଏବଂ କ୍ରୋଧରୁ କ୍ରୋଧ ବଢ଼ିଥାଏ ତଥା ପ୍ରତିଶୋଧର ଭାବନା ମଧ୍ୟ ନିରନ୍ତର ବୃଦ୍ଧି ପ୍ରାପ୍ତ ହୁଏ, ଏବଂ ଏହିପରି ସମାଜରେ ଈର୍ଷ୍ୟା, ଦ୍ୱେଷ ତଥା ଅଶାନ୍ତିର ବାତାବରଣ ଖେଳିଯାଏ । ପାରିବାରିକ ତଥା ସମାଜରେ ଅଶାନ୍ତି, ଭୟର ବାତାବରଣ ନାଶ କରିବା ନିମିତ୍ତ କ୍ଷମା ଧାରଣ କରିବା ଆବଶ୍ୟକ ।

କ୍ଷମା ଧର୍ମଃ କ୍ଷମା ସତ୍ୟଂ କ୍ଷମା ଦାନଂ କ୍ଷମା ଯଶଃ
କ୍ଷମା ସ୍ୱର୍ଗସ୍ୟ ସୋପାନ ମିତି ବେଦ ବିଦୋ ବିଦୁଃ ॥



# ୩୦. ସନ୍ଥ

ସନ୍ଥ ସଂସାରରେ ଭଗବାନଙ୍କ ପ୍ରତିନିଧି ଏବଂ ତାଙ୍କ ସ୍ୱରୂପ ହୋଇଥାନ୍ତି । ମନୁଷ୍ୟର କଲ୍ୟାଣ ପାଇଁ ସେ ପ୍ରତ୍ୟେକ ଦେଶ କାଳରେ ବିଦ୍ୟମାନ ରହିଥାଆନ୍ତି । ତାଙ୍କୁ ଚିହ୍ନିବାର ଆବଶ୍ୟକତା ରହିଛି । କିନ୍ତୁ ତାଙ୍କୁ ଚିହ୍ନିବା ପାଇଁ ଭଗବତ୍ କୃପା ଏବଂ ସନ୍ଥ କୃପାରୁ ହିଁ ହୋଇଥାଏ ।

ସନ୍ଥ ଗୁଣର ଭଣ୍ଡାର, ସାଂସାରିକ ଦୁଃଖ ରହିତ ଏବଂ ସନ୍ଦେହରୁ ସର୍ବଥା ଊର୍ଦ୍ଧ୍ୱରେ ରହିଥାଆନ୍ତି । ଭଗବାନଙ୍କ ଚରଣ କମଳ ବ୍ୟତୀତ ତାଙ୍କ ଦେହ କିମ୍ବା ଗୃହ ମଧ୍ୟ ପ୍ରିୟ ହୋଇ ନଥାଏ । ନିଜର ଗୁଣ ଶ୍ରବଣ କରିବାରେ ବିମୁଖ ଏବଂ ଅପର ଗୁଣ ପ୍ରକାଶରେ ଶତମୁଖ ହୋଇଥାଆନ୍ତି । ଧନୀ- ନିର୍ଦ୍ଧନ, ଗୁଣୀ-ନିର୍ଗୁଣ ସମସ୍ତଙ୍କ ସହ ସମାନ ବ୍ୟବହାର କରିଥାଆନ୍ତି । ସେ ପ୍ରାୟତଃ ନ୍ୟାୟ ପଥରେ ଚାଳିତ ହୁଅନ୍ତି । ସେ ସ୍ୱଭାବରେ ସରଳ ଏବଂ ସମସ୍ତଙ୍କୁ ପ୍ରେମପୂର୍ଣ୍ଣ ବ୍ୟବହାର କରିଥାଆନ୍ତି । ସନ୍ଥ ଜପ, ତପ, ବ୍ରତ, ଦମ, ସଂଜମ ଏବଂ ନିୟମର ପାଳନ ସବିଧି କରିଥାଆନ୍ତି । ଗୁରୁ, ଗୋବିନ୍ଦ ଏବଂ ବ୍ରାହ୍ମଣଙ୍କ ଚରଣରେ ତାଙ୍କ ପ୍ରେମ ରହିଥାଏ । ତାଙ୍କଠାରେ ଶ୍ରଦ୍ଧା, କ୍ଷମା, ମୈତ୍ରୀ, ଦୟା ମୁଦିତା ଏବଂ ଭଗବତ୍ ଚରଣରେ ସଦା ପ୍ରେମ ଅତୁଟ ରହିଥାଏ । ସନ୍ଥଙ୍କ ସ୍ୱଭାବରେ ବୈରାଗ୍ୟ, ବିବେକ, ବିନୟ, ବିଜ୍ଞାନ- ଅର୍ଥାତ୍ ଭଗବତ୍ ତତ୍ତ୍ୱଜ୍ଞାନ ଏବଂ ବେଦ ପୁରାଣର ଯଥାର୍ଥ ଜ୍ଞାନ ରହିଥାଏ । ସେ ଦମ୍ଭ- ଅଭିମାନରୁ ଦୂରରେ ଥାଆନ୍ତି । ଭୁଲରେ ମଧ୍ୟ କୁମାର୍ଗଗାମୀ ହୋଇ ନଥାନ୍ତି ।



# ୩୧. ବାସ୍ତବ ସ୍ୱାର୍ଥ

ଯେ ଯାବତ୍ ସ୍ୱାର୍ଥ ରହିଛି, ସେ ଯାବତ୍ ସେବାରେ ତ୍ରୁଟି ରହିବ । ଭଗବତ୍ ପ୍ରେମୀର ନିଜର କୌଣସି ସ୍ୱାର୍ଥ ନଥାଏ । ସୁତରାଂ ତା'ର ଜ୍ଞାତ ଅଜ୍ଞାତରେ ହେଉଥିବା ପ୍ରତ୍ୟେକ କ୍ରିୟା ସ୍ୱାଭାବିକ ଭାବେ ଲୋକ କଲ୍ୟାଣକାରୀ ହୋଇଥାଏ । ବସ୍ତୁତଃ ଏହିପରି ବ୍ୟକ୍ତି ସଚ୍ଚା ସ୍ୱାର୍ଥୀ ହୋଇଥାଆନ୍ତି । କାରଣ ତାହାର ପ୍ରତ୍ୟେକ କାର୍ଯ୍ୟ 'ସ୍ୱ' (ଆତ୍ମାର) ଅର୍ଥ (ହିତ) ଅର୍ଥାତ୍ ପରମାତ୍ମାଙ୍କ ପାଇଁ ହିଁ ହୋଇଥାଏ । ଏଣୁ ସେ କେବେ ଅହିତକର କର୍ମ କରିପାରେ ନାହିଁ । ତା'ର ମନରେ ନିଜ ବ୍ୟତୀତ ଅନ୍ୟ କେହି ରହି ନଥା'ନ୍ତି । ସେ ସମସ୍ତଙ୍କୁ ଆତ୍ମ ସ୍ୱରୂପ ହିଁ ଦେଖିଥାଏ ।

ବିଷୟ ପ୍ରେମୀ ମନୁଷ୍ୟଙ୍କୁ ହିଁ ସ୍ୱାର୍ଥୀ କୁହାଯାଏ, ଯଦ୍ୟପି ସେ ତତ୍ତ୍ୱତଃ ସ୍ୱାର୍ଥୀ ନୁହେଁ । ଯେ ନିଜ ଉପରକୁ ବିପତ୍ତି ଆହ୍ୱାନ କରେ । ସେ ସ୍ୱାର୍ଥର (ସ୍ୱଅର୍ଥର) ଆପଣା ହିତର ସାଧକ କିପରି ବୁଝାଯିବ ? ସେ ତ ଇନ୍ଦ୍ରିୟ ଭୋଗର ଲାଳସାରେ ହିଁ ଧନ, ସ୍ତ୍ରୀ, ସ୍ୱାଦିଷ୍ଟ ଭୋଜନ ଯଶ, ମାନ ଆଦିର ସଂଗ୍ରହରେ ଲାଗିରହେ ଏବଂ ଏହାକୁ ସେ ସ୍ୱାର୍ଥ ବୁଝିଥାଏ । ଏ କଥାକୁ ମଧ ଭୁଲିଯାଏ ଯେ ଇନ୍ଦ୍ରିୟ ଓ ବିଷୟ ସଂଯୋଗରେ ମିଳୁଥିବା ସୁଖ ଶେଷରେ ବିଷବତ୍ ଦୁଃଖଦାୟୀ ହୋଇଥାଏ । ପରିଣାମରେ ନରକ ଦାୟୀ ହୋଇଥାଏ । ଏହାକୁ ଆମେ ବାସ୍ତବ ସ୍ୱାର୍ଥ କିପରି କହିବା ? ଏଥିରେ ତ ସ୍ୱାର୍ଥର, ନିଜ ହିତର ନାଶ ହୋଇଥାଏ । କିନ୍ତୁ ଯେ ଯାବତ୍ ଏ ସ୍ୱାର୍ଥ ରହିଥାଏ, ସେ ଯାବତ୍ ଯଥାର୍ଥ ସ୍ଥାୟୀ ସୁଖ କେବେ ମିଳିନପାରେ । ଏହା ଏହି ସ୍ୱାର୍ଥର ମୂଳ ଦୋଷ ।

ଏଣୁ ଯଥା ସମ୍ଭବ ବିଷୟସୁଖ ଜନିତ ସ୍ୱାର୍ଥର ତ୍ୟାଗ କର । ନିଜ ଶରୀର, ମନ, ବୁଦ୍ଧି, ମୋ'ର କହୁଥିବା ସର୍ବ ପଦାର୍ଥ ପରମାତ୍ମାଙ୍କ ଚରଣରେ ଅର୍ପିତ କରିଦେଲେ ବାସ୍ତବ ସୁଖ- ଶାନ୍ତି ପ୍ରାପ୍ତ ହେବ ।



# ୩୨. ସମୁଚିତ ମାର୍ଗ

ମଂଗଳମୟ ପରମପିତା ଅନ୍ୟ ସମସ୍ତ ପ୍ରାଣୀଙ୍କ ଅପେକ୍ଷା ମନୁଷ୍ୟକୁ ଶ୍ରେଷ୍ଠ କରିଛନ୍ତି । ଆମକୁ ବୁଦ୍ଧି ଦେଇଛନ୍ତି, ଜ୍ଞାନ ଦେଇଛନ୍ତି, ଶକ୍ତି ଦେଇଛନ୍ତି, ଅନେକ ସାଧନ ଦେଇଛନ୍ତି । ଏଥି ସହିତ ସେ ଏ ସମସ୍ତ ବିଭୂତିର ସଦୁପଯୋଗ ପାଇଁ ଆମର କର୍ତ୍ତବ୍ୟ ମଧ୍ୟ ନିଶ୍ଚିତ କରି ଅଛନ୍ତି । ଆମର ଏହା ପରମ ଆବଶ୍ୟକ ଯେ ଆମେ ସେ କର୍ତ୍ତବ୍ୟକୁ ଜାଣିବା, ଯାହାକୁ ପରମପିତା ଆମପାଇଁ ନିର୍ଦ୍ଦିଷ୍ଟ କରିଅଛନ୍ତି । ଆମ ଜୀବନ ସଫଳତାର ସମସ୍ତ ରହସ୍ୟ ତହିଁରେ ନିହିତ । ଆମେ ଜୀବନରେ ଯେଉଁ ସୀମା ପର୍ଯ୍ୟନ୍ତ ଭଗବାନଙ୍କ ଆଜ୍ଞା ପାଳନ କରିଥାଆନ୍ତି ସେହି ସୀମା ପର୍ଯ୍ୟନ୍ତ ଜୀବନ ସଫଳ କୁହାଯାଇପାରେ । ଆମେ ସେହି ପରମପିତାଙ୍କ ସନ୍ତାନ, ଅତଃ ଆମର ସମସ୍ତ କର୍ମ, ସକଳ ଚିନ୍ତା, ସମଗ୍ର ଶକ୍ତି ସେହି ପ୍ରଭୁଙ୍କ ସେବା ଆରାଧନା ପ୍ରଭୃତିରେ ବ୍ୟୟିତ ହେବା ଉଚିତ । ଆମ ଜୀବନର ପ୍ରତ୍ୟେକ ଚେଷ୍ଟା ସେହି ମଙ୍ଗଳମୟ ଭଗବାନଙ୍କ ଆଜ୍ଞାନୁସାରେ ହେଉ ।

ପ୍ରଭୁ ସେବା କାର୍ଯ୍ୟକୁ ଆମେ ଅତ୍ୟନ୍ତ ସାଧାରଣ ଅଥବା ସବୁଠାରୁ କମ୍ ଆବଶ୍ୟକ ବୁଝି କରିବା ଉଚିତ ନୁହେଁ । ଅପର ପକ୍ଷେ ତାହାକୁ ଏପରି ସଂପନ୍ନ କରିବା ଯେ ଯେପରିକି ତାହା ପ୍ରଭୁଙ୍କ ଆଜ୍ଞା । ତାହାକୁ ପୂରଣ କରିବାରେ ନିଜର ସକଳ ଶକ୍ତି, ବୁଦ୍ଧି, ଚିନ୍ତା ଏବଂ ନିଷ୍ଠା ଲଗାଇ ଦେବା ଉଚିତ । ନିଜର ସମସ୍ତ ଉତ୍ସାହ, ସଂପୂର୍ଣ୍ଣ ଇଚ୍ଛାଶକ୍ତିର ବିନିଯୋଗ କରି ଦେବା ଉଚିତ । ଏଥିପାଇଁ ଉତ୍ତମ ପଥ ପ୍ରଦର୍ଶକ ସଂଧାନ କରିବା ଉଚିତ । ଆମର ଧର୍ମ, ସଦ୍‌ଗୁରୁ ତଥା ଧୈର୍ଯ୍ୟ ଆମକୁ ନିଶ୍ଚିତ ମାର୍ଗରେ ପହଞ୍ଚାଇ ଦେବାରେ ସବୁଠାରୁ ଅଧିକ ସହାୟକ ହେବ ।



# ୩୩. ସତ୍ୟ କଥନରେ ଲାଭ

ସଦା ସତ୍ୟଭାଷଣ କର । ସତ କହିବା ଦ୍ୱାରା ଶାନ୍ତି ମିଳିଥାଏ, ସତ୍ୟ ଭାଷଣରୁ ପରମାତ୍ମା ତତ୍ତ୍ୱ ପ୍ରାପ୍ତି ହୋଇଯାଏ । ଅସତ୍‌ର ସତ୍ତା ନାହିଁ, 'ନାସତୋ ବିଦ୍ୟତେ ଭାବଃ' । ଅସତ୍ ପ୍ରାପ୍ତ ହେଲେ ବି ମଧ୍ୟ ଅପ୍ରାପ୍ତ ହିଁ ହୋଇଥାଏ । ଆପଣ ବାଳକପଣ ଛାଡ଼ି ନାହାଁନ୍ତି, କିନ୍ତୁ ସେ ତ ଛାଡ଼ିଗଲା । ଶରୀର ନିତ୍ୟ ନିରନ୍ତର କ୍ଷୟ ହୋଇଯାଉଛି । ମୃତ୍ୟୁ ନିକଟରୁ ନିକଟତର ହେଉଛି । ଯାହା ନାଶବାନ, ନାଶ ହୋଇଯାଉଛି ତାହା ଅସତ୍ । ଯେପରି ଗୋଟିଏ ଗୋଟିଏ ପାହୁଣ୍ଡରେ ରାସ୍ତା ସରିଯାଏ ସେହିପରି ଗୋଟିଏ ଗୋଟିଏ ଶ୍ୱାସରେ ଆୟୁ କ୍ଷୟ ହୋଇଯାଉଛି । ଶ୍ୱାସପୂର୍ଣ୍ଣ ହୋଇଗଲେ ସେହି କ୍ଷଣରେ ଯିବାକୁ ପଡ଼ିବ । ସେ ସମୟରେ ଏହି ବିଚକ୍ଷଣତା, ଚାଲାଖି, ବଳ, ଦର୍ପ, କିଛି କାମରେ ଆସିବ ନାହିଁ ।

ଯାଉଥିବା ବିଭାଗ (ଶରୀର- ସଂସାର) ପୃଥକ୍, ରହିବା ବିଭାଗ ପୃଥକ୍ । ଯେ ପ୍ରତିକ୍ଷଣ ଯାଉଛି, ତା'ର ନାମ ଅସତ୍ୟ, ଏବଂ ଯେ ରହୁଛି ତା'ର ନାମ ସତ୍ୟ । ସତ୍ୟ ଭାଷଣରେ ସତ୍ୟର ପ୍ରାପ୍ତି ହୋଇଥାଏ ।

ଧନ ମୋ'ର- ଏହା ଦେହ ଭାବର ସଂବଂଧ । ମୁଁ ଧନୀ ଏହା ଅଦେହ ଭାବର ସଂବଂଧ । ଯାହା ସହିତ ସମ୍ବନ୍ଧ ନାହିଁ ସେ ଚାଲିଯାଏ, ଯେ ପୃଥକ୍ ହୁଏ ନାହିଁ ତାହା ତୁଟେ ନାହିଁ । 'ମୁଁ ଅଛି'ରେ ଆମେ ଅଭେଦ ଭାବର ସମ୍ବନ୍ଧ ମାନିଥାଉ । 'ମୁଁ' 'ଅଛି' ଠାରୁ ପୃଥକ ଏହା ମାର୍ମିକ କଥା । ମୁଁ ପ୍ରକୃତିର ଅଂଶ ଏବଂ ଅଛି ପରମାତ୍ମାଙ୍କ ଅଂଶ । 'ମୁଁ' ପଣ ନଷ୍ଟ ହେବା ପରେ 'ଅଛି' ପଣ ରହିବ । 'ମୁଁ' ଠାରୁ ନିଜକୁ ଅଲଗା ଅନୁଭବ କରିବା ହେଉଛି ତତ୍ତ୍ୱଜ୍ଞାନ, ମୁଁ ସହିତ ନିଜକୁ ଯୋଡ଼ିବା ଏକ ଅନୁଭବ କରିବା ଅଜ୍ଞାନ ।

ସତ୍ୟ ପ୍ରାପ୍ତ ପାଇଁ ସତ୍ୟ ଭାଷଣର ବଡ଼ ଆବଶ୍ୟକତା ରହିଛି ।

(ସ୍ୱାମୀ ରାମସୁଖଦାସଜୀ ମହାରାଜ)



# ୩୪. ବାସ୍ତବ ସୁଖ ଅଭିମୁଖ ହେବା

ଭଗବାନ୍ ଶ୍ରୀକୃଷ୍ଣ ଗୀତାର ଦ୍ୱିତୀୟ ଅଧ୍ୟାୟ ୬୬ତମ ଶ୍ଳୋକରେ କହୁଛନ୍ତି କି ଯେଉଁ ପୁରୁଷର ମନ ଏବଂ ଇନ୍ଦ୍ରିୟ ସଂଜମିତ ନୁହେଁ, ଏହିପରି ପୁରୁଷ ସଂସାରର ଭୋଗରେ ଏବଂ ସଂଗ୍ରହ କରିବାରେ ଲାଗିରହେ । କେବେ ମାନ ଚାହିଁଥାଏ, କେବେ ସୁଖ- ଆରାମ ଚାହିଁଥାଏ, କେବେ ଧନ ଚାହିଁଥାଏ । ତା' ଭିତରେ ଅନେକ ପ୍ରକାର କାମନା ରହିଥାଏ; ଏହେତୁ ସେ ସର୍ବଦା ଅଶାନ୍ତ ରହିଥାଏ । ଏହା ବ୍ୟତୀତ ଯେଉଁ ବ୍ୟକ୍ତିର ଚିତ୍ତ ନିରନ୍ତର ବିକ୍ଷିପ୍ତ, ସେ ରାଗ- ଦ୍ୱେଷ କ୍ରୋଧ, ଲୋଭ, ଈର୍ଷ୍ୟା, ମୋହ, ଅହଂକାର ଏବଂ ଭୟର ବନ୍ଧନରେ ବାନ୍ଧି ହୋଇଥାଏ । ଶ୍ରୀଭଗବାନ କହନ୍ତି କି- ଏପରି ଅଶାନ୍ତ ମନୁଷ୍ୟ ସୁଖ ପାଇପାରେ ନାହିଁ । ଭାବିବାର କଥା ଏହିକି ମନୁଷ୍ୟ ଅଶାନ୍ତ ହୁଏ କାହିଁକି ? ଅଶାନ୍ତର ହେତୁ ହେଉଛି ଭ୍ରମାତ୍ମକ ମାର୍ଗରେ ଯାତ୍ରା । ଯେଉଁ ମାର୍ଗରେ ଯିବା କଥା, ତହିଁରେ ନଚାଲି ଆସୁରୀ ସଂପଦ ଧାରଣ କରିବାରେ ଲାଗିଯାଏ ଏବଂ ଦୈବୀ ସଂପତ୍ତିକୁ ଗ୍ରହଣ ନକରିବା । ଗ୍ରହଣ ନକରିବାର କାରଣ ହେଉଛି ଅଜ୍ଞାନତା ଓ ଅବିବେକିତା । ଭଗବାନ ଗୀତାରେ କହିଛନ୍ତି କି "ଅଜ୍ଞାନେନା ବୃତଂଜ୍ଞାନଂ ତେନ ମୁହ୍ୟନ୍ତି ଜନ୍ତ ବଃ" (ଗୀତା- ୫/୧୪) । ଆମେ ବିଷୟ ଓ ଇନ୍ଦ୍ରିୟ ସଂଯୋଗରେ ତଥା ନିଦ୍ରା, ଆଳସ୍ୟ ଓ ପ୍ରମାଦରେ ସୁଖ ପାଇବାର ପ୍ରୟାସ କରିଥାଉଁ । ବାସ୍ତବରେ ଯେଉଁଠି ସୁଖନାହିଁ, ତାହା ହେଉଛି ଦୁଃଖର କାରଣ । ତୃଷ୍ଣାରୁ ଇନ୍ଦ୍ରିୟ ନିବୃତ୍ତ ହେବା ହିଁ ସୁଖ । ବିଷୟ ସମ୍ବନ୍ଧୀ ତୃଷ୍ଣାରେ କଦାପି ସୁଖ ନାହିଁ । ତାହା ତ ଦୁଃଖ ହିଁ ଦୁଃଖ । ଅଭିପ୍ରାୟ ଏହିକି ତୃଷ୍ଣା ରହିଲେ କେବେ ହେଁ ସୁଖର ଝଲକ ମାତ୍ର ମଧ୍ୟ ମିଳିପାରେ ନାହିଁ । ଯାହା ସୁଖ ବୋଲି ଜଣାଯାଏ ତାହା ସୁଖ ନୁହେଁ, ସୁଖାଭାସମାତ୍ର ।

ଆସୁରୀ ସଂପଦକୁ ତ୍ୟାଗ କରି ଦୈବୀ ସଂପଦର ଅଧିକାରୀ ହୋଇ ପାରିଲେ ବାସ୍ତବ ସୁଖ ଦିଗକୁ ଯାତ୍ରା ଆରମ୍ଭ କରିପାରିବା ।



# ୩୫. ଶରୀର ମାଦ୍ୟମ୍

'ଶରୀର ମାଦ୍ୟଂ ଖଳୁଧର୍ମ ସାଧନମ୍' ଧର୍ମର ପାଳନ ପାଇଁ ଶରୀର ହିଁ ପ୍ରଥମ ସାଧନ। ଏଣୁ ଏହି ଧର୍ମ ରୂପକ ସାଧନ (ଶରୀର)କୁ ନିରୋଗ ରଖିବା ଆମର ପ୍ରଥମ କର୍ତ୍ତବ୍ୟ, କାରଣ ସଂସାରର ସକଳ ସୁଖର ପ୍ରଥମ ସ୍ଥାନ ନିରୋଗ ଶରୀର ହିଁ ହୋଇଥାଏ। ଏହା ମଧ୍ୟ ଶାସ୍ତ୍ର ବଚନ। କୁହାଯାଏ- "ପହଲା ସୁଖ ନିରୋଗୀ କାୟା" ଯେବେ ଶରୀର ସୁସ୍ଥ ହେବ ତେବେ ମନ ମଧ୍ୟ ସୁସ୍ଥ ହେବ। ଏଥିପାଇଁ କୁହାଯାଇଛି ସୁସ୍ଥ ଶରୀରରେ ସୁସ୍ଥ ମସ୍ତିଷ୍କ (ମନ) ନିବାସ କରିଥାଏ। ଭାରତୀୟ ଜୀବ ବିଜ୍ଞାନ (ଆୟୁର୍ବେଦ)ରେ ମଧ୍ୟ ସ୍ୱାସ୍ଥ୍ୟର ତିନିଗୋଟି ଆଧାର (ଉପସ୍ତମ୍ଭ) ସ୍ୱୀକୃତ।

"ତ୍ରୟଃ ଉପସ୍ତମ୍ଭୋ ଇତ୍ୟାହାରଃ ସ୍ୱପ୍ନୋ ବ୍ରହ୍ମଚର୍ଯ୍ୟ ମିତି ॥"

(ଚରକ ସୂ. ୧ ୧/୩୫)

ଅର୍ଥାତ୍ ଆହାର, ସ୍ୱପ୍ନ (ନିଦ୍ରା) ଏବଂ ବ୍ରହ୍ମଚର୍ଯ୍ୟ ଅର୍ଥାତ୍ ସଂଜମ ଏ ତିନିଟି ଶାରୀରିକ ସ୍ୱାସ୍ଥ୍ୟର ପ୍ରମୁଖ ଆଧାର, ଏଥି ମଧ୍ୟରୁ ପ୍ରଥମ ସ୍ଥାନ ଆହାରର। ଆହାର ହିଁ ପ୍ରାଣୀଙ୍କୁ ନୂତନ ବଳ ଏବଂ ଦେହ ଧାରଣ କରିବାର ଶକ୍ତି ଯୋଗାଇଥାଏ। ଆହାରରୁ ହିଁ ଆୟୁ, ତେଜ ଉତ୍ସାହ, ସ୍ମୃତି, ଓଜ (ଜୀବନଶକ୍ତି) ତଥା ଶରୀରାଗ୍ନିର ବୃଦ୍ଧି ହୋଇଥାଏ, ଏହା କିପରି ହେବା ପ୍ରୟୋଜନ ଏ ସଂପର୍କରେ ଭଗବତ୍ ଗୀତା ସାତ୍ତ୍ୱିକ ଆହାରର ବର୍ଣ୍ଣନା କରି କହିଛନ୍ତି- (ଗୀତା ୧୭/୮) ଆୟୁ, ସତ୍ତ୍ୱଗୁଣ, ବଳ, ଆରୋଗ୍ୟ, ସୁଖ, ପ୍ରସନ୍ନତା ବୃଦ୍ଧି କରୁଥିବା, ସ୍ଥିର ରହୁଥିବା, ହୃଦୟକୁ ଶକ୍ତି ପ୍ରଦାନକାରୀ ରସଯୁକ୍ତ ତଥା ସ୍ନିଗ୍ଧ- ଏହିପରି ଆହାର ସାତ୍ତ୍ୱିକ ମନୁଷ୍ୟକୁ ପ୍ରିୟ ହୋଇଥାଏ, ଅତଏବ ସାତ୍ତ୍ୱିକ ଖାଦ୍ୟ ମନୁଷ୍ୟ ନିମିତ୍ତ ସର୍ବୋତ୍ତମ।



# ୩୬. ଭଗବନ୍ନାମର ନିରନ୍ତର ଜପ

ଭଗବନ୍ନାମର ବାସ୍ତବ ମହିମା ତ ବର୍ଣ୍ଣନାତୀତ । ଶାସ୍ତ୍ରରେ, ସନ୍ଥଙ୍କ ବାଣୀରେ ଭଗବନ୍ନାମର ମହିମା ଯାହା ବର୍ଣ୍ଣିତ ହେବାର ଦେଖାଯାଏ, ଏହା ତ କେବଳ କୃତାର୍ଥ ହୃଦୟର ଉଚ୍ଛ୍ୱାସ ମାତ୍ର । ସ୍ୱୟଂ ଭଗବାନ ମଧ୍ୟ ନିଜ ନାମ ମହିମାକୁ ବର୍ଣ୍ଣନା କରିପାରିବେ ନାହିଁ । "ରାମୁନ ସକ ହିଁ ନାମ ଗୁନ ଗାଇ" (ରା.ଚମା. ୧/୧୬/୮) । ଶ୍ରୀମଦ୍ ଭାଗବତ, ଶ୍ରୀରାମ ଚରିତ ମାନସ, ପୁରାଣ ଆଦିରେ ଭଗବନ୍ନାମର ଅତୁଳନୀୟ ମହିମା ପାଠ କରିବା ପରେ ତ ସାଧକର ଦୃଷ୍ଟି ଅନ୍ୟ କୌଣସି ସାଧନକୁ ଦିଗକୁ ଯିବା ଉଚିତ୍ ନୁହେଁ । ବସ୍ତୁତଃ ଏହି ଏକ ସାଧନରେ ସଂପୂର୍ଣ୍ଣ ସାଧନାର ସିଦ୍ଧି ହୋଇଯାଏ । ଏଥିରେ ଊଣା ହୋଇଗଲେ ଅନ୍ୟ ସାଧନର ସିଦ୍ଧି କଠିନ ହୋଇଥାଏ । ଭଗବାନ ଏବଂ ଭଗବାନଙ୍କ ନାମରେ କୌଣସି ଭେଦ ନାହିଁ, ସ୍ୱୟଂ ଭଗବାନ୍ ହିଁ ନିଜ ନାମ ରୂପରେ ପ୍ରକଟ ହୋଇଥାଆନ୍ତି ।

**ନାମ ଚିନ୍ତାମଣିଃ କୃଷ୍ଣ ଶ୍ଚୈତନ୍ୟ ରସ ବିଗ୍ରହଃ**
**ନିତ୍ୟ ଶୁଦ୍ଧଃ ପୂର୍ଣ୍ଣ ମୁକ୍ତୋଽଭିନ୍ନ ତ୍ୱା ନାମି ନୋଃ ।।**

କୃଷ୍ଣ ନାମ ହେଉଛି ଚିନ୍ତାମଣି, ସମସ୍ତ ଅଭିଳଷିତ ଫଳଦାତା । ଏହା ଚୈତନ୍ୟ ରସ ବିଗ୍ରହ, ନିତ୍ୟ, ଶୁଦ୍ଧ, ପୂର୍ଣ୍ଣ, ମୁକ୍ତ ତଥା ନାମ ଏବଂ ସମୀର ଅଭିନ୍ନତାକୁ ବ୍ୟକ୍ତ କରିଥାଏ ।

ଭଗବାନଙ୍କ ନାମ ଜପରେ ତିନିଗୋଟି ବିଧାନ ରହିଛି । ଜପ ନିରନ୍ତର ହେବା । ଅର୍ଥାତ୍ ଜାଗ୍ରତ ଅବସ୍ଥାରେ ସଚେତନ ଭାବେ ଜପ ଅବିଚ୍ଛିନ୍ନ ରହିବା, (୨) ଜପ ସମୟରେ ଭଗବାନଙ୍କ ପ୍ରତି ଧ୍ୟାନ ଯୁକ୍ତ ହେବା ଏବଂ (୩) ଏ ସମସ୍ତ ମାନସିକ କ୍ରିୟାକୁ ଗୁପ୍ତ ରଖିବା ଅର୍ଥାତ୍ ସାଧାରଣରେ ପ୍ରକଟ ନକରିବା ।

ସନ୍ଥଙ୍କ ଅନୁଭବ ଆଧାରରେ କୁହାଯାଇପାରେ ନିରନ୍ତର ନାମ ଜପ ଭଗବତ ପ୍ରାପ୍ତିର ଅମୋଘ ସାଧନ । ଭଗବାନ ବେଦବ୍ୟାସ କହିଛନ୍ତି-

**'ଜପାତ୍ ସିଦ୍ଧି ଜପାତ୍ ସିଦ୍ଧି ର୍ଜପାତ୍ ସିଦ୍ଧିଃ କଳୌଯୁଗେ ।"**



# ୩୭. ନୀରୋଗ କିଏ ?

ଥରେ ଆଚାର୍ଯ୍ୟ ଚରକ ନିଜ ଶିଷ୍ୟଙ୍କୁ ପଚାରିଲେ 'କୋଽରୁକ୍' 'କୋଽରୁକ୍' 'କୋଽରୁକ୍' କିଏ ରୋଗୀ ନୁହେଁ ? ଅର୍ଥାତ୍ ସୁସ୍ଥ କିଏ ? ଜଣେ ପ୍ରବୃଦ୍ଧ ଶିଷ୍ୟ ଉତ୍ତର ଦେଲା ହିତଭୂକ୍, ମିତଭୂକ୍, ଋତଭୂକ୍ । ଆମ ପୂର୍ବଜମାନେ ସନ୍ତୁଳିତ ଭୋଜନକୁ ମାତ୍ରାହାର ଏବଂ ଷଡ଼ରସ ଯୁକ୍ତ ହିତଭୋଜନ କହି ପ୍ରାଚୀନ ଗ୍ରନ୍ଥମାନଙ୍କରେ ବର୍ଣ୍ଣନା କରିଅଛନ୍ତି । ଏହି ହିତ ଭୋଜନ ଆମ ଶରୀରରେ ରସ, ରକ୍ତ, ମାଂସ, ମେଦ, ଅସ୍ଥି, ମଜ୍ଜା, ଶୁକ୍ର ଓ ଓଜ ଆଦି ଧାତୁ ବୃଦ୍ଧି ହୋଇ ଶରୀରରେ ବିକାଶ, ବୃଦ୍ଧି ଏବଂ କ୍ଷତିପୂର୍ତ୍ତି, ଆବଶ୍ୟକ ଉଷ୍ଣତା ଏବଂ ଶକ୍ତି ସଂଚାର କରିଥାଏ । ଏଣୁ କୁହାଯାଇଛି-

ଷଟ୍‌ତ୍ରିଂଶତଂ ସହସ୍ରାଣି ରାତ୍ରୀଣାଂ ହିତ ଭୋଜନଃ
ଜୀବ ତ୍ୟନାତୁରୋ ଜନ୍ତୁର୍ଜିତାତ୍ମା ସମ୍ମତଃ ସତାମ୍ ॥

ହିତ ଭୋଜନ ଅର୍ଥାତ୍ ସନ୍ତୁଳିତ ପଥ୍ୟ ଗ୍ରହଣକାରୀ ବ୍ୟକ୍ତି ଛତିଶହଜାର ରାତ୍ରି ଅର୍ଥାତ୍ ଶତବର୍ଷ ପର୍ଯ୍ୟନ୍ତ ପୂର୍ଣ୍ଣ ନୀରୋଗ ଅବସ୍ଥାରେ ରହିପାରେ । ଦ୍ୱିତୀୟ ସୂତ୍ର ହେଲା ମିତଭୂକ୍, ଅର୍ଥାତ୍ ସ୍ୱଳ୍ପ ଆହାର । ଯେତେ ବେଶୀ ଖାଇହେବ ନଖାଇ ଅର୍ଦ୍ଧେକ ଭୋଜନ (ଖାଦ୍ୟ), ଚତୁର୍ଥାଂଶ ଜଳ ଏବଂ ଅପର ଚତୁର୍ଥାଂଶ ବାୟୁ ସଂଚାର ବିଚାରରେ ଭୋଜନ । ୩ୟ ହେଉଛି 'ଋତଭକ୍' ଅର୍ଥାତ୍ ଯେଉଁ ଖାଦ୍ୟ ଗ୍ରହଣ କରିବା ତାହାର ଆଧାର ଅର୍ଥ କେଁଉ ମାର୍ଗରେ ଉପାର୍ଜିତ, ଚୋରୀ, ଲାଞ୍ଚ ବା ଅନ୍ୟ କୌଣସି ନକାରାତ୍ମକ, ପୀଡ଼ାଦାୟକ ମାର୍ଗରେ ରୋଜଗାର ହୋଇ ନଥିବା ଆବଶ୍ୟକ । ଅନ୍ୟ କେହି ଋତଭୁକ୍‌କୁ ଋତୁ ଅନୁକୂଳ ଭୋଜନ ଭାବେ ବ୍ୟାଖ୍ୟାନ କରନ୍ତି । ଅସତ୍ ଉପାୟରେ ଅର୍ଜିତ ଧନରେ ଖାଦ୍ୟ ଗ୍ରହଣ କରାଗଲେ ମନସ୍ଥିତି ଅସ୍ତବ୍ୟସ୍ତ ହେବା ସାଧାରଣ ଅନୁଭବ୍ୟ ବିଷୟ । ସୁତରାଂ ଖାଦ୍ୟ ସତ୍ ଉପାର୍ଜିତ ଧନରେ ହେବା ଜରୁରୀ ।



# ୩୮. ସଂସ୍କାର

ସଂସ୍କାର ବ୍ୟକ୍ତିକୁ ଶାରୀରିକ, ସାମାଜିକ, ବୌଦ୍ଧିକ ଏବଂ ଧାର୍ମିକ ଶୁଦ୍ଧତା ନିମିତ୍ତ ଏହି ଧାର୍ମିକ କ୍ରିୟା ଯାହା ବିଶୁଦ୍ଧ ପବିତ୍ର ଅନୁଷ୍ଠାନରେ ଆସ୍ଥା ରଖିଥାଏ । ଏହାକୁ ସଂପନ୍ନ କରି ମାନବ ସମାଜର ଅଂଗ ହୋଇ ବ୍ୟକ୍ତି ଆପଣାର ଆଧ୍ୟାତ୍ମିକ ବିକାଶ କରିଥାଏ । ବ୍ୟକ୍ତିର ଅ-ସଂସ୍କୃତ ସ୍ୱରୂପକୁ ସୁ-ସଂସ୍କୃତ ଏବଂ ଅନୁଶାସିତ କରିବା ନିମିତ୍ତ ସଂସ୍କାର ଯୋଜନା ପ୍ରସ୍ତୁତ କରାଯାଇଛି । ଅପ୍ରତ୍ୟକ୍ଷ ରୂପରେ ମନୁଷ୍ୟ ଜୀବନ ଉପରେ ପ୍ରଭାବ ବିସ୍ତାର କରୁଥିବା ଅଦୃଶ୍ୟ ବିଚାରରୁ ନିରାପଦ ହେବା ପାଇଁ ମଧ୍ୟ ଏହାର ନିର୍ଦ୍ଧାରଣ ହୋଇଅଛି । ଏହାର ମୂଳ ଆଧାର ଧର୍ମ- ଯଜ୍ଞ ଏବଂ କର୍ମକାଣ୍ଡ । ମନୁଷ୍ୟର ଆଧ୍ୟାତ୍ମିକ ଓ ସାଂସ୍କୃତିକ ଜୀବନ ସଂସ୍କାରର ନିଷ୍ପନ୍ନତାରୁ ପ୍ରଭାବିତ ହୋଇଥାଏ । ଅତଃ ସଂସ୍କାରର ଆଧାର ହେଉଛି ଧର୍ମ । ଯାହା ମାଧ୍ୟମରେ ବ୍ୟକ୍ତି ଜୀବନକୁ ଉନ୍ନତ ପରିଷ୍କୃତ ଓ ସୁସଂସ୍କୃତ କରିଥାଏ ।

'ସଂସ୍କାର' ଶବ୍ଦରେ ସମ୍‌ଉପସର୍ଗ, କୃଧାତୁ ଏବଂ ଘଞ୍‌ ପ୍ରତ୍ୟୟ ରହିଛି । ଯାହାର ଅର୍ଥ ଶୁଦ୍ଧତାରେ ନିହିତ । ମୀମାଂସାରେ ଏହାର ଅର୍ଥ "ବିଧିବତ୍ ଶୁଦ୍ଧି", ଅଦ୍ୱୈତ ବେଦାନ୍ତରେ ଏହା "ଆତ୍ମ ବ୍ୟଞ୍ଜକ" ଶକ୍ତିକୁ ବ୍ୟକ୍ତ କରିଥାଏ । ସାଧାରଣ ଭାବେ ସଂସ୍କାରର ସଂଖ୍ୟା (୧) ଷୋହଳ ଗୃହୀତ । ତନ୍ମଧ୍ୟରୁ ପ୍ରଥମ ଗର୍ଭାଧାନ ମହତ୍ତ୍ୱକୁ ସ୍ୱୀକାର କରାଯାଇଛି । ଅର୍ଥାତ୍ ଯଦି ଆଦର୍ଶ ଆର୍ଯ୍ୟ ଜୀବନର ମୂଳଦୁଆ ଷୋଳ ସଂସ୍କାର ହୁଏ ତେବେ ସଂସ୍କାରମୟ ଶ୍ରେଷ୍ଠ ଜୀବନର ଆଧାର ଗର୍ଭାଧାନ । ଯାହାଦ୍ୱାରା ଅନାଗତ ବ୍ୟକ୍ତି ସମାଜ ତଥା ରାଷ୍ଟ୍ରର ବିକାଶ ନିହିତ ।



## ୩୯. ପ୍ରଃ ଦାନର ଫଳ ଲୋକ ପରଲୋକରେ ମିଳେ କିପରି ?

ଉଃ- ଶ୍ରେଷ୍ଠ ପୁରୁଷଙ୍କ ସାତ୍ତ୍ୱିକ ଦାନ ଫଳ ପରଲୋକରେ ମିଳିଥାଏ । ଅବିବେକୀ, ଲୋଭୀ, ମୋହୀ, କାମୀଙ୍କ ଦାନ ଫଳ ଏହି ଲୋକରେ ମିଳିଥାଏ । ଯେ ଦେଇକରି ପଶ୍ଚାତ୍ତାପ କରେ, ଯେ ଅପାତ୍ର କୁପାତ୍ରରେ ଦିଏ, ଅଶ୍ରଦ୍ଧା ପୂର୍ବକ ଦିଏ ତାକୁ କେଉଁଠି ହେଲେ ମଧ୍ୟ ଦାନର ଫଳ ମିଳେ ନାହିଁ । ସେ ଯାହା କିଛି ଦିଏ ତା'ର ସଂଗ୍ରହ ଚିନ୍ତାରୁ ମୁକ୍ତ ହୋଇଯାଏ, ଏତିକି ମାତ୍ର ଲାଭ ହୁଏ । ତମୋଗୁଣୀ ଦାନର ଫଳ କାମୋପଭୋଗର ସୁବିଧା ରହିଛି । ରଜୋଗୁଣୀ ଦାନର ଫଳ ଧନ ଏବଂ ମାନ ପ୍ରାପ୍ତି ପାଇଁ ଉଦ୍ଦିଷ୍ଟ । ସତ୍ତ୍ୱଗୁଣୀ ଦାନର ଫଳ ଭୋଗରୁ ବିରକ୍ତ ଏବଂ ଦୈବୀ ସଂପତ୍ତିର ପ୍ରାପ୍ତି ପାଇଁ ହୋଇଥାଏ ।

**ପ୍ରଃ- ଭୀକ୍ଷାସୀଙ୍କୁ ଦାନ ଦେବାର ବିଧାନ କ'ଣ ?**

ଉଃ- ଭୀକ୍ଷାସୀଙ୍କୁ ଅନ୍ନ ଭିକ୍ଷା ଦେବା ବିଧି କିନ୍ତୁ ଦାନରେ ସଂକଳ୍ପ କରାଯାଇଥିବା ସପତ୍ତି ତ ବିଦ୍ୱାନ୍, ସନ୍ତୋଷୀ, ସଦାଚାରୀ, ସଦ୍‌ଗୁଣସଂପନ୍ନ ବ୍ରାହ୍ମଣଙ୍କୁ ହିଁ ଦେବା ଉଚିତ । ଯେ ଶ୍ରମ କରି ପରିବାରର ଆବଶ୍ୟକତା ପୂର୍ତ୍ତି ଯୋଗ୍ୟ ଧନ ଅର୍ଜନ କରିପାରନ୍ତି ନାହିଁ, ତାଙ୍କ ଆବଶ୍ୟକତା ପୂର୍ତ୍ତି ପାଇଁ ସହାୟତା କରିବା ଉଚିତ । ଅଳସୁଆ, ବିଳାସୀ, ହିଂସକ, କ୍ରୋଧୀ, ଧର୍ମ ବିମୁଖ ଦାନର ପାତ୍ର ନୁହଁନ୍ତି ।



# ୪୦. ଭୋଜନର ପାଞ୍ଚ ଶୁଦ୍ଧି

"ସଂସ୍କାରୋହି ଗୁଣାନ୍ତରାଧାନମ୍"

ଅର୍ଥାତ୍ କୌଣସି ଦ୍ରବ୍ୟରେ ଅଧିକ ଗୁଣର ଆଧାର ହିଁ ସଂସ୍କାର । ଏହି ଗୁଣର ଆଧାର ଆହାର ଶୁଦ୍ଧି କରଣ ଦ୍ୱାରା ସମ୍ଭବ । ଆହାର ସଂସ୍କାର ପଞ୍ଚବିଧ ।

(୧) କ୍ଷେତ୍ରଶୁଦ୍ଧି- ଆହାର ଯେଉଁ ସ୍ଥାନରେ ପ୍ରସ୍ତୁତ ହେଉଛି ସେ ସ୍ଥାନର ସ୍ୱଚ୍ଛତା ଏବଂ ପବିତ୍ରତା ସର୍ବାଦୌ କରଣୀୟ । ଭୋଜନ ପ୍ରସ୍ତୁତ ସ୍ଥଳ ଅର୍ଥାତ୍ ପାକଶାଳାକୁ ପବିତ୍ର ବିଚାର କରାଯାଉଥିଲା । ଯେଉଁଠାକୁ ଅନ୍ୟର ପ୍ରବେଶ ନଥିଲା । ପାକ କ୍ରିୟାକୁ ଏକ ପବିତ୍ର କର୍ମ ଭାବେ ଗ୍ରହଣ କରି ତା'ର ପବିତ୍ରତା ରକ୍ଷା କରାଯିବା ବିଧେୟ ।

(୨) ଦ୍ରବ୍ୟ ଶୁଦ୍ଧି- ପାକ ପାଇଁ ଉଦ୍ଦିଷ୍ଟ ଦ୍ରବ୍ୟ (ଚାଉଳ, ଡାଲି, ପରିବା ଆଦି)କୁ ଶୁଦ୍ଧ କରାଯିବା ବିଧି । ଯଦ୍ୱାରା ଅବାଞ୍ଛିତ ବାହ୍ୟ ଅଶୁଚୀ ନିରାକୃତ ହୋଇ ପାରିବ ।

(୩) କାଳଶୁଦ୍ଧି- କାଳ ବା ସମୟ ବହୁ ଗୁରୁତ୍ୱପୂର୍ଣ୍ଣ- ଅସମୟରେ କରାଯାଇଥିବା ଭୋଜନ ଶରୀର ଏବଂ ବିଚାରକୁ ଦୂଷିତ କରିଥାଏ । ନିଶ୍ଚିତ ସମୟରେ ଭୋକ ଲାଗିଲେ ଭୋଜନ କରିବା ହେଉଛି ଭୋଜନର ସର୍ବୋତ୍ତମ ସମୟ ।

(୪) ଭାବଶୁଦ୍ଧି- ଆହାର ଉପରେ ଭାବନାର ଗଭୀର ପ୍ରଭାବ ପଡ଼ିଥାଏ । ଏଣୁ ଭୋଜନ ସମୟରେ ଶାନ୍ତ ଏବଂ ଏକାଗ୍ର ମନରେ ଭୋଜନ କର୍ତ୍ତବ୍ୟ । ବିକ୍ଷିପ୍ତ ମନରେ ବା ବ୍ୟାକୁଳ (ନାନା କାରଣ-ଭୟ, ଲଜ୍ଜା, ଉଦ୍‌ବେଗ, କ୍ରୋଧ ଆଦି) ଅବସ୍ଥା ବା ସ୍ଥାନରେ ଭୋଜନ ତ୍ୟାଜ୍ୟ । ପ୍ରସନ୍ନ ପୂର୍ବକ ଭୋଜନ ଶରୀର ଏବଂ ମନ ଉପରେ ଅନୁକୂଳ ପ୍ରଭାବ ପକାଇଥାଏ ।

(୫) କ୍ରିୟାଶୁଦ୍ଧି- ମାନବୀୟ କ୍ରିୟାର ପ୍ରଭାବ ଆହାର ସହ ସମ୍ବନ୍ଧିତ । ଅନୀତି, ଅନାଚାର, ବେଇମାନୀ ଆଦି ଅଧର୍ମ ସାଧନ ଦ୍ୱାରା କ୍ରୀତ ସାମଗ୍ରୀରେ ତିଆରି ଭୋଜନ ଆମ ଶରୀର ତଥା ମନକୁ ପ୍ରଭାବିତ କରିଥାଏ । ପୂର୍ବୋକ୍ତ କଥିତ ପ୍ରକାର ଅନ୍ନ ପରିମାଣରେ ଆମ ମନକୁ କେବେ ବି ସାତ୍ତ୍ୱିକ କରିପାରେ ନାହିଁ । ସୁତରାଂ ଧନ ଅର୍ଜନର କ୍ରିୟାଗୁଡ଼ିକର ଶୁଦ୍ଧତା ଉପରେ ଧ୍ୟାନ ଦେବା ଉଚିତ ।

"ଆହାର ଶୁଦ୍ଧୌ ସତ୍ତ୍ୱଶୁଦ୍ଧିଃ ।"

(ଛାନ୍ଦୋଗ୍ୟ ଉପନିଷଦ-୭/୨୬)



# ୪୧. ମନୁଷ୍ୟ ଜୀବନର ଦୁର୍ଲଭତା

ଆମେ ଜୀବନରେ ବହୁତ ବସ୍ତୁ ପ୍ରାପ୍ତ କରିବାର ଇଚ୍ଛା କରିଥାଉ, କିନ୍ତୁ ପାଇ ପାରୁନାହିଁ ଏବଂ ଏପରି କିଛି ବସ୍ତୁ ଯାହା ଇଚ୍ଛା କରି ନଥାଉଁ ତାହା ଆମ ପାଖରେ ଉପସ୍ଥିତ ହୋଇଥାଏ । ଫଳରେ ଆମ ଜୀବନକୁ ଅସ୍ତବ୍ୟସ୍ତ କରିପକାଏ । ଏହାକୁ ଆମେ ପରାଧୀନତା, ବନ୍ଧନ ବା ଅଜ୍ଞାନ କହି ପାରିବା । ଭଗବାନ ଆମକୁ ଯେତିକି ଶକ୍ତି ଏବଂ ବସ୍ତୁ ପ୍ରଦାନ କରିଛନ୍ତି, ତହିଁରେ ଯଦି ଆମେ ସନ୍ତୁଷ୍ଟ ରହିପାରିବା ତେବେ ଆମକୁ ଅନଧିକାର ଚର୍ଚ୍ଚା କରି ଅସ୍ତବ୍ୟସ୍ତ ହେବାକୁ ପଡ଼ିବ ନାହିଁ । ଏବଂ ଆମ ଜୀବନ ସୁଖମୟ ହୋଇଯିବ । ଆମେ ନିଜେ ନିଜ ବନ୍ଧନ ତିଆରି କରି ଏଣ୍ଡିପୋକ କୋଷା ତୁଲ୍ୟ ଆବଦ୍ଧ କରି ସାରା ଜୀବନ ଛଟ-ପଟ ହୋଇ ଚାଲିଛୁ । ଭଗବାନ୍ ଅଶେଷ କୃପା କରି ଆମକୁ ମନୁଷ୍ୟ ଶରୀର ପ୍ରଦାନ କରିଅଛନ୍ତି । ମନୁଷ୍ୟର ଶରୀର, ଇନ୍ଦ୍ରିୟ, ମନ, ବୁଦ୍ଧି ଏବଂ ପ୍ରାଣ ଏ ସମସ୍ତ ତାକୁ (ମନୁଷ୍ୟକୁ) ମୁକ୍ତ କରିବାର ସମର୍ଥ । ଏହାର ବୈଧ ବ୍ୟବହାର କରାଗଲେ ଏହା ମୁକ୍ତିର ସାଧକ ହୋଇଥାଆନ୍ତି । ଦୁରୁପଯୋଗ ଦ୍ୱାରା ହିଁ ନରକର ହେତୁ ହୋଇଥାଆନ୍ତି । ଇନ୍ଦ୍ରିୟର ଅସଂଜମ ହିଁ ଅନର୍ଥର ହେତୁ । ଇନ୍ଦ୍ରୟ ବଶତା ହିଁ ସଂପଦର କାରଣ । ଯେ ଇନ୍ଦ୍ରିୟର ଦାସ ନହୋଇଣ ଏହାର ଯଥୋଚିତ ବ୍ୟବହାର କରି ମୁକ୍ତି ସାଧନା କରିଥାଆନ୍ତି ସେ ମୁକ୍ତ ହୋଇଥାଆନ୍ତି । ଏହାର ବିପରୀତ ଯେ ଇନ୍ଦ୍ରିୟର ଦାସ ହୋଇ ସେବନ କରି ଭୋଗରେ ମାତି ରହନ୍ତି, ସେ ଜୀବିତ ରହି ମୃତବତ୍ ହୋଇଥାଆନ୍ତି ।



# ୪୨. ଗର୍ଭାଧାନ ସଂସ୍କାର ମହତ୍ତ୍ୱ

ଅନେକ କ୍ଷେତ୍ରରେ ଦେଖାଯାଏ ଯେ ଉଚ୍ଚ କୁଳ ସୁଶିକ୍ଷିତ ମାତା ପିତା, ସଂସ୍କାରମୟ ବାତାବରଣ, ଉତ୍ତମ ଶିକ୍ଷାଦୀକ୍ଷା ପରେ ମଧ୍ୟ ସନ୍ତାନ ସଂସ୍କାର ବିପରୀତ ଆଚରଣସଂପନ୍ନ ହୁଅନ୍ତି । ଏପରି ହେବାର କାରଣ ସନ୍ଧାନ ପିତା-ମାତାଙ୍କ କ୍ଷେତ୍ରରେ ସମ୍ଭବ ହୁଏ ନାହିଁ । ବାସ୍ତବରେ ଜନ୍ମ ପରେ ଶିଶୁକୁ ପ୍ରଦତ୍ତ ପ୍ରଶିକ୍ଷଣ ମାଟି ଗଣ୍ଠା କାନ୍ଥରେ କରାଯାଉଥିବା ପ୍ଲାଷ୍ଟରପେଣ୍ଟ ପରି ହୁଏ । ଯାହା କିଛି ଦିନ ପରେ ଝଡ଼ିପଡ଼େ ଏବଂ କାନ୍ଥର ବାସ୍ତବତା ଦେଖାଯାଏ । କହିବାର ତାତ୍ପର୍ଯ୍ୟ ସନ୍ତାନର ବ୍ୟକ୍ତିତ୍ୱ ନିର୍ମାଣ ଜନ୍ମପରେ ନୁହେଁ, ଅପରନ୍ତୁ ଗର୍ଭାବସ୍ଥାରେ ହିଁ ହୋଇଥାଏ । ଏତିକି ନୁହେଁ- ଧୃତରାଷ୍ଟ୍ରଙ୍କ ନେତ୍ରହୀନତା, ପାଣ୍ଡୁଙ୍କ ବ୍ୟାଧି, ବିଦୁରଙ୍କ ପୂର୍ଣ୍ଣ ସୁସ୍ଥ ତଥା ନୀତି କୁଶଳ ହେବା ଏହି ତଥ୍ୟକୁ ପରିପୁଷ୍ଟ କରେ କି ସନ୍ତାନର ଜୀବନ ତଥା ବ୍ୟକ୍ତିତ୍ୱର ନିର୍ଦ୍ଧାରଣ ଗର୍ଭ ସଂଚାର ସମୟରେ ହିଁ ହୋଇଥାଏ । ଗର୍ଭାବସ୍ଥାରେ ସନ୍ତାନର ବ୍ୟକ୍ତିତ୍ୱ- ସମ୍ବନ୍ଧିତ ସମସ୍ତ ସୃଜନପୂର୍ଣ୍ଣ ହୁଏ, ଜନ୍ମ ବେଳକୁ ପୂର୍ଣ୍ଣ ପରିପକ୍ୱ ଘଟ ତୁଲ୍ୟ ହୋଇଥାଏ । ଯାହାର ଆକାର ପ୍ରକାରର ପରିବର୍ତ୍ତନ ମନୁଷ୍ୟ ସାମର୍ଥ୍ୟର ପରେ ହୋଇଥାଏ । ହିରଣ୍ୟକଶ୍ୟପୁ ଦ୍ୱାରା ବାଳକ ପ୍ରହ୍ଲାଦକୁ ପ୍ରଦତ୍ତ ସମସ୍ତ ରାକ୍ଷସୀ ବିଦ୍ୟା ବ୍ୟର୍ଥ ହେଲା, କାରଣ ହେଲା ପ୍ରହ୍ଲାଦ ଗର୍ଭସ୍ଥିତିରେ ହିଁ ଭକ୍ତିରସ ରୂପୀ ରସ- ଆସ୍ୱାଦନ କରିଥିଲା । ସେ ହେତୁ ଶିଶୁ ଉପରେ ପ୍ରଦତ୍ତ ଆସୁରୀ ବିଦ୍ୟା ଗ୍ରହଣ କରି ପାରିନଥିଲା ଏବଂ ହିରଣ୍ୟକଶ୍ୟପୁର ସକଳ ପ୍ରୟାସ ବ୍ୟର୍ଥ ହୋଇଥିଲା । ଏ ପ୍ରସଙ୍ଗରେ ଅଭିମନ୍ୟୁଙ୍କ ଚକ୍ରବ୍ୟୁହ ଭେଦ ପ୍ରସଙ୍ଗ ଦୃଷ୍ଟାନ୍ତ ବିଚାର୍ଯ୍ୟ ।



# ୪୩. ଗର୍ଭାଧାନର ମାନସତାତ୍ତ୍ୱିକ ଦିଗ

ଏହା ସ୍ୱତଃ ସିଦ୍ଧ ଯେ ଶିଶୁର ସୃଷ୍ଟି ମାତା- ପିତାଙ୍କ ଶରୀର, ଆତ୍ମା ଏବଂ ମନରେ ହୋଇଥାଏ । ଏ ତିନିଟି ମଧ୍ୟରୁ ମନର ପ୍ରାଧାନ୍ୟ ଅଧିକ । ମନ ସଦା ଚଞ୍ଚଳ ତଥା ଅନିୟମ୍ୟ । ବୁଦ୍ଧିର ସମାବେଶରେ କିଛି ନା କିଛି କରିଚାଲେ । ଉଚିତ ଦିଗ ପ୍ରାପ୍ତ ନହେଲେ ବିପଥଗାମୀ ହେବା କିଛି କଠିନ ନୁହେଁ । ଅନ୍ୟ ସମୟ ଅପେକ୍ଷା ଗର୍ଭାଧାନ ପରି ଗୁରୁତ୍ୱପୂର୍ଣ୍ଣ, ପବିତ୍ର ସମୟରେ ଯେବେ ଆମେ ବଂଶ- ଜାତି ତଥା ପରମ୍ପରାକୁ ନିର୍ମାଣ କରିବାକୁ ପ୍ରସ୍ତୁତ ହେଉଛୁ, ସେ ସମୟରେ ଏହି ପ୍ରକାର ଆଶ୍ରୟହୀନ ମନୋବୃତ୍ତି ଅଯୋଗ୍ୟ କୁଳକଳଙ୍କ ଏବଂ ସର୍ବଦା ସନ୍ତାପ ଅଗ୍ନିରେ ଜଳୁଥିବା ଶିଶୁ ଜନ୍ମର କାରଣ ହୋଇଥାଏ ।

ଏ ପ୍ରକାର ଅସାବଧାନ ହେତୁ ଏ ସବୁର ଦୁଷ୍ ପରିଣାମ ମାତା- ପିତାସହ ସନ୍ତାନ ମଧ ଆଜୀବନ ଭୋଗିଥାଏ । ଅତଃ ଋତୁସ୍ନାତା ନାରୀ ଚତୁର୍ଥ ଦିନ ସୁନ୍ଦର ବସ୍ତ୍ରାଳଙ୍କାର ଧାରଣ କରି ମଙ୍ଗଳାଚରଣ ତଥା ସ୍ୱସ୍ତି ବାଚନ ପୂର୍ବକ ପତି ବା ଶ୍ରେଷ୍ଠ ପୁରୁଷର ଦର୍ଶନ କରିବା ଉଚିତ । ଋତୁସ୍ନାନ ପରେ ନାରୀ ଯେଉଁ ପୁରୁଷର ପ୍ରଥମ ଦର୍ଶନ କରେ ତାହାକୁ ସେହି ପ୍ରକାର ସନ୍ତାନ ପ୍ରାପ୍ତି ହୁଏ । ଅତଏବ ଇଚ୍ଛିତ ସନ୍ତାନ ପ୍ରାପ୍ତି- ଅର୍ଥେ ଋତୁକାଳରେ, ରଜୋଦର୍ଶନ ଉତ୍ତାରୁ ଋତୁ ସ୍ନାନରେ ଶୁଦ୍ଧ ହୋଇ ଅଷ୍ଟମୀ, ଚତୁର୍ଦ୍ଦଶୀ, ଅମାବାସ୍ୟା, ପୂର୍ଣ୍ଣିମା, ସଂକ୍ରାନ୍ତି, ଆଦି ପର୍ବ ଦିନକୁ ବାଦ୍ ଦେଇ ଜ୍ୟୋତିଷ ଶାସ୍ତ୍ରାନୁମୋଦିନ ଶୁଭ ସମୟରେ ଗର୍ଭାଧାନ କରିବା ବିଧେୟ । ପୁତ୍ରାଭିଳାଷୀ ଯୁଗ୍ମ ଅର୍ଥାତ୍ ଷଷ୍ଠ, ଅଷ୍ଟମ, ଦଶମ, ଦ୍ୱାଦଶ, ଚତୁର୍ଦ୍ଦଶ ଏବଂ ଷୋଡ଼ଶ ରାତ୍ରିରେ ନାରୀ ସମାଗମ କର୍ତ୍ତବ୍ୟ । କନ୍ୟା ସନ୍ତାନ କାମୀ ପଞ୍ଚମ, ସପ୍ତମ, ନବମ, ପଞ୍ଚଦଶ ରାତ୍ରିରେ ଗର୍ଭାଧାନ କରଣୀୟ । ଏକାଦଶ ଓ ତ୍ରୟୋଦଶକୁ ନିନ୍ଦନୀୟ କୁହାଯାଇଛି ।

ଯେଉଁ ମାତା ପିତା ଅଜ୍ଞତା ବଶତଃ କାମ ପ୍ରେରିତ ହୋଇ ଗର୍ଭାଧାନ କରନ୍ତି ଗର୍ଭାବସ୍ଥାରେ ନୈତିକତା ଅପେକ୍ଷା ଭୋଗ- ବିଳାସକୁ ପ୍ରାଧାନ୍ୟ ଦିଅନ୍ତି, ସେମାନଙ୍କଠାରୁ ସୃଷ୍ଟ ସନ୍ତାନ ଯେ ଆଦର୍ଶ- ଗୁଣାଧାର ହେବ, ଏହା ବ୍ୟର୍ଥ ଭାବନା ।



# ୪୪. ମୁଁ କିଏ ?

ଯେବେ ସତ୍‌ସଂଗ, ଶାସ୍ତ୍ର- ଅବଗାହନ ଏବଂ ମହାପୁରୁଷଙ୍କ ଯୁକ୍ତିରେ ଏହା ବୋଧ ହୋଇଗଲା କି ମୁଁ ଇନ୍ଦ୍ରିୟ ନୁହେଁ, ମୁଁ ହାତ ନୁହେଁ, ପାଦ ନୁହେଁ, ମୁଁ ଏ ସବୁଠାରୁ ପୃଥକ୍, ଆତ୍ମ ସ୍ୱରୂପ, ତେବେ ତ ନଦୀ ପାର ହୋଇଗଲ । ବ୍ୟକ୍ତିଗତ ଅହଂର ନିଃଶେଷ ହୋଇଯିବାପରେ ଆତ୍ମସାକ୍ଷାତ୍‌କାର ନିଶ୍ଚୟ- ସହଜ ସୁଲଭ ହୋଇଯାଏ । ଆତ୍ମସାକ୍ଷାତ୍‌କାର ଅର୍ଥାତ୍ ସେହି ତତ୍ତ୍ୱର ଦର୍ଶନ, ଯାହା ଅତ୍ୟନ୍ତ ବ୍ୟାପକ, ଅକଳ୍ପନୀୟ । ସେ ଗତିଶୀଳ, ଆକାଶଚାରୀ ସୂର୍ଯ୍ୟ, ବସୁ, ଅନ୍ତରୀକ୍ଷରେ ବିଚରଣକାରୀ ବାୟୁ, ପୃଥିବୀରେ ସ୍ଥିତ ଅଗ୍ନି, କଳସରେ ସ୍ଥିତ ସୋମ । ସେହି ପ୍ରକାର ତାହା ମନୁଷ୍ୟ ମଧରେ ଗମନକାରୀ, ଦେବତାମାନଙ୍କ ମଧରେ ଜାଣିଲା ବାଲା (ତତ୍ତ୍ୱ), ସତ୍ୟ ବା ଯଜ୍ଞରେ ଗମନକାରୀ, ଜଳ, ପୃଥିବୀ, ଯଜ୍ଞ ଏବଂ ପର୍ବତରୁ ଉତ୍ପନ୍ନ ହେଉଥିବା ତଥା ସତ୍ୟ ସ୍ୱରୂପ ଏବଂ ମହାନ୍ ।

**"ହଂସଃ ଶୁଚିଷଦ୍ଧ ସୁରନ୍ତରିକ୍ଷ ସଦ୍ଧୋତା ବେଦିଷଦତିଥି ର୍ଦୁରୋଣସତ୍ ।"**

**(କୃଷ୍ଣ ଯଜୁର୍ବେଦ ୧/୮/୧୫/୧୮)**

'ବିଷ୍ଣୁ ପୁରାଣରେ ଋଭ ତଥା ନିଦାଘଙ୍କ ସମ୍ବାଦରେ ଆତ୍ମାର ସର୍ବବ୍ୟାପକତା ନିଦର୍ଶନ ଏହିପରି-

**"ଏକଃ ସମସ୍ତଂ ଯଦି ହାସ୍ତି କିଞ୍ଚି ଉଦଚ୍ୟୁତୋ ନାସ୍ତି ପରଂ ତତୋଽନ୍ୟତ୍**

**(ଚ) ସୋଽହଂ ସ ତ୍ୱଂ ସତ୍ ସର୍ବମେତ ଦାତ୍ମସ୍ୱରୂପଂ ତ୍ୟଜ ଭେଦମୋହମ୍ ।।"**

**(ବି.ପୁ. ୨/୧୬/୨୩)**

ଅର୍ଥାତ୍- ଏହି ସଂସାରରେ ଯାହା କିଛି ରହିଛି, ତାହା ସବୁ ଏକ ଆତ୍ମା ହିଁ ବିରାଜିତ, ତାହା ଅବିନାଶୀ, ଏହା ବ୍ୟତୀତ ଅନ୍ୟ କିଛି ନାହିଁ । ମୁଁ, ତୁ ସେ ଏ ସମସ୍ତ ହେଉଛନ୍ତି ଆତ୍ମସ୍ୱରୂପ । (ଏଣୁ) ଭେଦଜ୍ଞାନ ରୂପ ମୋହ ଛାଡ଼ ।



# ୪୫. ଉଦାରତା

ଯେ ପ୍ରସନ୍ନ ରହେ, ସେ ହିଁ ଉଦାର । ମନୁଷ୍ୟ ମଧ୍ୟରେ ପ୍ରସନ୍ନ ରହିବାର ଇଚ୍ଛା ସ୍ୱାଭାବିକ ଭାବେ ରହିଛି, କିନ୍ତୁ ଅଜ୍ଞାନୀ ବ୍ୟକ୍ତି ଜାଣେ ନାହିଁ ଯେ ସଚ୍ଚା ପ୍ରସନ୍ନତା କ'ଣ ? ଅଜ୍ଞାନବଶରେ ପ୍ରସନ୍ନତାର ନାମ ନେଇ ତାକୁ ରୋଧ କରୁଥିବା ବସ୍ତୁକୁ ଇଚ୍ଛା କରି ବସି ଯାଇଛି ଏବଂ ଅପ୍ରସନ୍ନତାକୁ ଆପଣେଇ ନେଇଛି । ଯେଉଁ ବସ୍ତୁକୁ ପାଇଲା ପରେ ଇନ୍ଦ୍ରିୟର ସୁଖ ଏବଂ ନପାଇଲେ ଦୁଃଖ ହୁଏ, ଅଜ୍ଞାନୀ ପୁରୁଷ ସେହି ବସ୍ତୁକୁ ପ୍ରାପ୍ତ କରି କିଛି ସମୟ ପାଇଁ ନିଜକୁ ପ୍ରସନ୍ନ ମାନିନିଏ ଏବଂ ତାହାର ନଷ୍ଟ ହେବାରେ ପୁନଃ ଦୁଃଖ ମାନିନିଏ । କିଛି ସମୟର ସୁଖ ହେଲା ତ ସଂସାରର ତାହା ଦୁଃଖ । ଯାହାଦ୍ୱାରା ସୁଖର ଭ୍ରମ କରୁଅଛି ଏବଂ ସାରା ସଂସାରକୁ ଠକିଦିଏ । ଏହି ସ୍ୱଳ୍ପ ସମୟ ସୁଖ ମନୁଷ୍ୟ ଜୀବନର ସୁନ୍ଦରତା, ମହାନତାକୁ ନଷ୍ଟ କରିଥାଏ ।

ଅଳ୍ପ ସମୟର ପ୍ରସନ୍ନତା, ବ୍ୟକ୍ତି, ବସ୍ତୁ, ପରିସ୍ଥିତିଜନିତ ପ୍ରସନ୍ନତା ତ ଭ୍ରମମାତ୍ର । ଏହା ଅପ୍ରସନ୍ନତାର ବାସ୍ତବ ରୂପ । ଯଦି ମନୁଷ୍ୟ ଏହି ସ୍ୱଳ୍ପ କାଳର ଭ୍ରାନ୍ତ ପ୍ରସନ୍ନତାର ପଛରେ ନ ଦୌଡ଼ିବ, ତେବେ ବାସ୍ତବ ପ୍ରସନ୍ନତା ତା' ହାତକୁ ଆସିଯିବ । ଅଜ୍ଞାନୀ ଭଲରେ ମାନିନିଏ ଯେ ସଂସାରର ପଦାର୍ଥରେ ମନୁଷ୍ୟକୁ ପ୍ରସନ୍ନ କରିବାର ଶକ୍ତି ରହିଛି । କିନ୍ତୁ ବାସ୍ତବ କଥା ହେଉଛି, ତହିଁରେ ମନୁଷ୍ୟକୁ ପ୍ରସନ୍ନ କରିବାର ଶକ୍ତି ନାହିଁ । ନିଜକୁ ପ୍ରସନ୍ନ ରଖିବାର ଶକ୍ତି ତ ବ୍ୟକ୍ତିର ମନରେ ହିଁ ରହିଛି । ଏହି ଶକ୍ତି ହେଉଛି ତାହାର ଶୁଦ୍ଧତା । ସଂସାରୀ ଭଲ ଭାବରେ ବୁଝି ନିଅନ୍ତୁ କି ମନକୁ ଶୁଦ୍ଧ ରଖିବା ବିନା ସଂସାରରେ କେହି କେବେ ବି ଲକ୍ଷଲକ୍ଷ ପ୍ରଯତ୍ନ କଲେ ମଧ୍ୟ ପ୍ରସନ୍ନ ରହି ନପାରେ ।



# ୪୬. ସାଧନା ସରଣୀ

ନିଜ ନିଜର ଅଧିକାର ଅନୁସାରେ ସାଧନା କରିବା ମନୁଷ୍ୟର କର୍ତ୍ତବ୍ୟ । ଭଗବାନ୍ ଅର୍ଜୁନଙ୍କୁ ନିମିତ୍ତ କରି ଜ୍ଞାନ, ଭକ୍ତି ଏବଂ କର୍ମର ଅପୂର୍ବ ସମନ୍ୱୟ କରି ଯେଉଁ ଉପଦେଶ ଦେଇଛନ୍ତି, ତାହା ମୁମୁକ୍ଷୁମାନଙ୍କ ପାଇଁ ଉପଯୋଗୀ । ସାଧାରଣତଃ ତିନି ପ୍ରକାର ମନୁଷ୍ୟଙ୍କର ଲକ୍ଷ୍ୟ ଏକ ହିଁ ହୋଇଥାଏ । କର୍ମୀ କର୍ମ ଦ୍ୱାରା, ଜ୍ଞାନୀ ଜ୍ଞାନ ଦ୍ୱାରା ଏବଂ ଭକ୍ତ ଭକ୍ତି ଦ୍ୱାରା ନିଜ ଲକ୍ଷ୍ୟରେ ଅଗ୍ରସର ହୋଇଥାଆନ୍ତି । ନିଜର ଶକ୍ତି ଏବଂ ସାଧନ ସାମଗ୍ରୀକୁ ବିଚାର କରି ଯେ ଯେତିକି ସମର୍ଥ ତା' ପାଇଁ ସେତିକି ସାଧନା କରିବା ଯୁକ୍ତି ସଂଗତ । କର୍ମ ବିନା ଭକ୍ତି ଏବଂ ଭକ୍ତି ବିନା ଜ୍ଞାନ ସ୍ଥିତ ହୋଇପାରେ ନାହିଁ । ଅତଏବ ଖଣ୍ଡନ-ମଣ୍ଡନ ଛାଡ଼ି ମୁମୁକ୍ଷୁ ସତ୍ୟ ମାର୍ଗରେ ଅଗ୍ରସର ହେବା ଆବଶ୍ୟକ । ସତ୍ୟ ସ୍ୱୟଂ ପ୍ରମାଣ ହେବା କାରଣରୁ ସମସ୍ତଙ୍କର ନିଜର ବସ୍ତୁ । ସାଧନା ଦ୍ୱାରା ସତ୍ୟର ଅଭିବ୍ୟକ୍ତି ହୋଇଥାଏ । ସତ୍ୟ ସ୍ୱ ପ୍ରମାଣ ହେବା ହେତୁ ସାଧନା ସାପେକ୍ଷା ନୁହେଁ । ଅତଏବ ସାଧକ ତ୍ରିବିଧ ମାର୍ଗ ଆଧାରରେ ସତ୍ୟର ସନ୍ଧାନୀ ହୋଇଥାଆନ୍ତି ।

ସାଧନା ଦ୍ୱାରା ଯେ ସିଦ୍ଧ ହୋଇଗଲେ, ତାଙ୍କ ଚିତ୍ତରେ ଶାନ୍ତି, ଭୋଗ ନିସ୍ପୃହତା, ଆନନ୍ଦର ଅଭିବ୍ୟକ୍ତି, ବିଷୟ ବୈରାଗ୍ୟ, ଆରୋଗ୍ୟ-ନୀରୋଗତା, ସୁଖ-ଦୁଃଖରେ ସମତା ତଥା ପ୍ରସନ୍ନତା ଆଦି ବାହ୍ୟ ଲକ୍ଷଣକୁ ଦେଖି ଅନ୍ୟମାନେ ଅନୁମାନ ମାତ୍ର କରିପାରନ୍ତି, କିନ୍ତୁ ଜ୍ଞାନ ଏବଂ ବ୍ରହ୍ମସାକ୍ଷାତ୍ କାର, ମୁକ୍ତି ସ୍ୱସଂବେଦ୍ୟ ହୋଇଥିବାରୁ ତାହା ଅନ୍ୟର ବୁଦ୍ଧି ପର୍ଯ୍ୟାୟର ବିଷୟ ହୋଇ ନପାରେ ।

ସାଧନାର ପ୍ରମୁଖ ପ୍ରସଂଗ ହେଉଛି ଦିନଚର୍ଯ୍ୟା ଏବଂ ଜୀବନଚର୍ଯ୍ୟାକୁ ଆଦର୍ଶ କରିଥାଏ ସାତ୍ତ୍ୱିକ ତତ୍ତ୍ୱ, ଯାହାକୁ ଆପଣେଇ ବ୍ୟକ୍ତି ଶ୍ରେୟ ମାର୍ଗର ପଥିକ ହୋଇଥାଏ ଏବଂ ଆପଣା ଜୀବନ- ଲକ୍ଷ୍ୟ ପ୍ରାପ୍ତ କରିଥାଏ ।



# ୪୭. ସ୍ୱଧର୍ମ ପାଳନରେ ଆନନ୍ଦ

ଶାସ୍ତ୍ର କଥନାନୁସାରେ ଦେଖାଯାଏ ଯେ ଯେଉଁ ବର୍ଣ୍ଣାଶ୍ରମ ଯେତେ ଉଚ୍ଚ ତା' ପାଇଁ ସେହି ପରିମାଣରେ ଅନୁଶାସନ କଠିନ ହୋଇଥାଏ, କିନ୍ତୁ ଯେଉଁ ବର୍ଣ୍ଣ- ଆଶ୍ରମ ଯେତେ ନୀଚ ତାଙ୍କ ପାଇଁ ନିୟମ ସମାନୁପାତିକ ସରଳ ହୋଇଥାଏ। ଯେପରି ଶମ, ଦମ, ଶୌଚ, ଶାନ୍ତି, ଜ୍ଞାନ, ବିଜ୍ଞାନ ଆଦି ନଅ ଧର୍ମର ପାଳନରେ ବ୍ରାହ୍ମଣର କଲ୍ୟାଣ ହୋଇଥାଏ। ସେହି କଲ୍ୟାଣ ଶୌର୍ଯ୍ୟ, ତେଜ, ଧୈର୍ଯ୍ୟ, ଦାନ, ଅପଳାୟନ, ଈଶ୍ୱରଭାବ ଆଦି ସାତଧର୍ମ ପାଳନରେ କ୍ଷତ୍ରୀୟର ହୋଇଥାଏ। ସେହିପରି କୃଷି, ଗୋରକ୍ଷା ଆଦି ଧର୍ମରେ ଯେଉଁ କଲ୍ୟାଣ ବଶ୍ୟକୁ ହୋଇଥାଏ, ସେହି କଲ୍ୟାଣ ମାତ୍ର ସେବାଧର୍ମରେ ଶୂଦ୍ରର ହୋଇଥାଏ। ଏ ପ୍ରସଙ୍ଗରେ ବିଷ୍ଣୁ ପୁରାଣର ଏକ ଆଖ୍ୟାନ ଏହିପରି- ଏକଦା ବହୁ ଋଷି-ମୁନି ଏକତ୍ର ହୋଇ ଶ୍ରେଷ୍ଠତା ନିର୍ଣ୍ଣୟ କରିବା ପାଇଁ ଭଗବାନ ବ୍ୟାସଙ୍କ ନିକଟକୁ ଗଲେ। ବ୍ୟାସ ସମସ୍ତଙ୍କୁ ବସାଇ ଗଂଗାରେ ସ୍ନାନ ପାଇଁ ଗଲେ। ସ୍ନାନ ସମୟରେ କହିଲେ କି କଳିଯୁଗ! ତୁମେ ଧନ୍ୟ, ସ୍ତ୍ରୀ! ଶୂଦ୍ର ତୁମେ ଧନ୍ୟ। ଜଳରୁ ବାହାରକୁ ଆସିବା ପରେ ଋଷିମାନେ ପୁଚ୍ଛାକଲେ- ଆପଣ କଳିଯୁଗ, ସ୍ତ୍ରୀ ଏବଂ ଶୂଦ୍ରଙ୍କୁ ଧନ୍ୟ କହିଲେ କାହିଁକି ? ସେ କହିଲେ ଋଷିବୃନ୍ଦ! କଳିଯୁଗରେ ଆପଣାର ଧର୍ମ ପାଳନ କରିବା ଦ୍ୱାରା ସ୍ତ୍ରୀ ଏବଂ ଶୂଦ୍ରଙ୍କ କଲ୍ୟାଣ ବହୁତ ଶୀଘ୍ର ହୋଇଥାଏ। ତାଙ୍କ ଧର୍ମ ମଧ୍ୟ ସରଳ, ଏଣୁ ମୁଁ ତାଙ୍କୁ ଧନ୍ୟବାଦ ଦେଲି।

ବାସ୍ତବରେ ପରମାତ୍ମା ହିଁ ସମସ୍ତ ପ୍ରାଣୀଙ୍କ ଭରଣପୋଷଣ କରିଥାନ୍ତି, କିନ୍ତୁ ଜୀବାତ୍ମା ସଂସାରରେ ନିଜ ସମ୍ବନ୍ଧ ମାନି ନେଇଥିବା କାରଣରୁ ସାଂସାରିକ ବ୍ୟକ୍ତିଙ୍କୁ ଆପଣାର ମାନିନିଏ, ଏବଂ ତାଙ୍କ ଭରଣପୋଷଣ ଭାର ନିଜ ଉପରକୁ ନେଇଥାଏ, ଯଦ୍ୱାରା ସେ ବ୍ୟର୍ଥରେ ହିଁ ଦୁଃଖ ଭୋଗ କରିଥାଏ। ରିକ୍ତ ଅହଙ୍କାର, ପ୍ରଭୁପଣକୁ ନିଜ ଉପରେ ଆରୋପ କରି ଦୁଃଖ ପସରା ମୁଣ୍ଡେଇ ବୁଲେ। ସକଳ ଯୋଗ- କ୍ଷେମର ଦାୟିତ୍ୱ ତାଙ୍କ ଉପରେ ଛାଡ଼ିଦେଲେ ସଂସାରୀ ହୋଇ ମଧ୍ୟ ଆନନ୍ଦରେ ରହିବା ସମ୍ଭବ ହେବ।



# ୪୮. ଗୋଟିକୁ ଚୟନ କର

ସତକଥା ହେଉଛି ଏହା ଯେ ଯାହାର ଅମରତ୍ୱର ଅଭିଳାଷ ହୁଏ ତାକୁ ଅମରତ୍ୱ ମିଳେ । ମାନବ ଜୀବନରେ ଦୁଇ ପ୍ରକାର ଇଚ୍ଛାର ସମାହାର ଦେଖିବାକୁ ମିଳେ । ଭୋଗର ଇଚ୍ଛା ଏବଂ ଅମରତ୍ୱର ଅଭିଳାଷ । ଭୋଗ ଇଚ୍ଛା ନିମନ୍ତେ ଶରୀର ଆଦି ମିଳିଛି, କିନ୍ତୁ ଅମରତ୍ୱ ଅଭିଳାଷ ପାଇଁ କୌଣସି ବସ୍ତୁ, ବ୍ୟକ୍ତି ଆଦିର ଆବଶ୍ୟକତା ନାହିଁ । ଯେଉଁ ସମୟରେ ଅମରତ୍ୱର ଅଭିଳାଷ ପୂର୍ଣ୍ଣ ରୂପେ ଜାଗ୍ରତ ହୋଇଯାଏ ସେହି କ୍ଷଣରୁ ହିଁ ଭୋଗର ଇଚ୍ଛା ତୁଟିଯାଏ । ପୁନଃ ଅମରତ୍ୱର ଅଭିଳାଷ ସ୍ୱତଃ ପୂର୍ଣ୍ଣ ହୋଇଯାଏ ।

ଭୋଗର କାମନା ନାଶ କରିବା ପାଇଁ ଇନ୍ଦ୍ରିୟ ଅବିଷୟ ହୋଇଯାଏ । ପୁନଃ ମନ ନିର୍ବିକଳ୍ପ ହୋଇଯାଏ । ବୁଦ୍ଧି ନିଜ ଅଧିଷ୍ଠାନରେ ବିଲୀନ ହୋଇଯାଏ । ଏହା ହିଁ 'ଯୋଗ' । ଏହି ଯୋଗରୁ ଏହି ସାମର୍ଥ୍ୟ ଆସେ, ଯହିଁରେ ମାନବ କର୍ତ୍ତବ୍ୟ କର୍ମରେ ନିବୃତ୍ତ ହୋଇଥାଏ ଅର୍ଥାତ୍ ଯାହା କରିବାକୁ ଚାହେଁ ତାହା ସ୍ୱତଃ ହେବାରେ ଲାଗେ ଏବଂ ଯାହା ନକରିବାକୁ ଚାହେଁ ତା'ର ଉତ୍ପତ୍ତି ମଧ୍ୟ ହୁଏ ନାହିଁ ।

ସାଧକଙ୍କ ପ୍ରତି ଏହା ଆବଶ୍ୟକ କି ତାହା ନିଜ ପାଇଁ ରୁଚିକର ହେବ । ହଁ ଏହା ଅବଶ୍ୟ କି ସାଧନା ରୁଚିକର ହୋଇଥିଲେ ହେଁ ବିବେକ ବିରୋଧି ନହେଉ । କାରଣ ଯାହା ବିବେକ ବିରୋଧି ହୋଇଥାଏ, ତାହା ହେଉଛି ଭୋଗ, ସାଧନା ନୁହେଁ । ବସ୍ତୁ, ବ୍ୟକ୍ତି ଆଦିରେ ସତ୍ୟତା ଓ ସୁନ୍ଦରତା ରୁଚିକର ହୋଇପାରେ କିନ୍ତୁ ସେହି ରୁଚି ବିବେକ ବିରୋଧି ହୋଇଥିବାରୁ, ଅନିତ୍ୟ ହୋଇଥିବାରୁ ବିନାଶଶୀଳ । ଯାହାର ସୁନ୍ଦରତା ନିତ୍ୟ ସଂବଂଧ ସୁରକ୍ଷିତ ରହିପାରିବ ତାହା ହିଁ ବାସ୍ତବ ସୁନ୍ଦର । ଅତଃ ଯୋଗ୍ୟତା, ସାଧୁତା, ପରିଶ୍ରମ ପୂର୍ବକ ବସ୍ତୁ ଉତ୍ପାଦନ, ତଥା ତାହାର ସଦୁପଯୋଗ ଏବଂ ନିର୍ମୋହତା ପୂର୍ବକ ବ୍ୟକ୍ତିର ସେବା କରିବା ରୁଚିରେ ବିବେକର ବିରୋଧ ହୁଏ ନାହିଁ । ସେହିକ୍ରମରେ ବ୍ରହ୍ମ ସାକ୍ଷାତ୍କାର ପଥ ଆଲୋକିତ ହୋଇଥାଏ ।

(ସ୍ୱାମୀ ଶରଣାନନ୍ଦଜୀ ମହାରାଜ)



# ୪୯. ନିର୍ବିଶେଷ ସାଧନା

ବ୍ରହ୍ମଜ୍ଞାନ- ଅଦ୍ୱୟ, ନିରାକାର, ନିର୍ବିଶେଷ ଯେଉଁ ତତ୍ତ୍ୱ, ତାହା ପ୍ରାପ୍ତି ହୁଏନାହିଁ । ସେ ତ ରହିଛି, ଏଣୁ ବ୍ରହ୍ମ ଉପାସନାରେ ନିର୍ଗୁଣ ନିରାକାର ନିର୍ବିଶେଷ ଉପାସନାରେ ସଂବନ୍ଧ ଯୋଡ଼ିବାର ଆବଶ୍ୟକତା ନାହିଁ । ସମ୍ବନ୍ଧ ଯେଉଁଠି ହୁଏ, ତାହା କାହାରି ସହିତ ହୋଇଥାଏ ଏବଂ ତାହା କାହାରି ସହିତ ଯେଉଁଠି ହୁଏ ସେଠାରେ ଅନ୍ୟ କାହା ସହିତ କଳ୍ପନା ରହିଥାଏ । ଅନ୍ୟ କେହି ନାହିଁ, ଏଣୁ ସମ୍ବନ୍ଧ ଯୋଡ଼ିବା ହିଁ ନାହିଁ । ନିଜର ସ୍ୱରୂପ-ରୂପୀ ସମ୍ବନ୍ଧକୁ କେବଳ ଜାଣିନେବା । ପୁଣି ଏହାର ପ୍ରକ୍ରିୟା କ'ଣ ? ବହୁତ କ୍ରିୟା ରହିଛି । ସବୁକୁ ଗୋଟିଏ ପରେ ଗୋଟିକୁ ବାହାର କରିଦେବା ପରେ ଯାହା ଅବଶେଷରେ ରହିଯାଏ, ତାହା ହିଁ ବ୍ରହ୍ମର ସ୍ୱରୂପ । କିନ୍ତୁ ହଟାଇ ଯାହା ଶେଷରେ ରହେ, ସେହି ହଟାଇବା ଏବଂ ଅବଶେଷ ରହିବା ଯଦି ବୃତ୍ତି ଜନ୍ୟ ହୋଇଥାଏ, ତେବେ ତାହା ମଧ୍ୟ ବ୍ରହ୍ମ ନୁହେଁ । ବୃତ୍ତି ଏଠାରେ ବ୍ରହ୍ମର ସ୍ୱରୂପ ହୋଇଅଛି । ବ୍ରହ୍ମାକାର ବୃତ୍ତିକୁ ଆମେ ଧ୍ୟାନ କହିପାରିବା । ବ୍ରହ୍ମ କହି ପାରିବା ନାହିଁ । ବୃତ୍ତି ବ୍ରହ୍ମାକାର କ'ଣ ନୁହେଁ! ବୃତ୍ତିଜନିତ ବ୍ରହ୍ମର ଅନୁଭୂତି ହୋଇଥାଏ । ବ୍ରହ୍ମଙ୍କ ସ୍ୱରୂପର ପ୍ରାକଟ୍ୟ ହୁଏ ନାହିଁ । ଯେବେ ସେହି ବୃତ୍ତି ମଧ୍ୟ ନଷ୍ଟ ହୋଇଯାଏ, ତେବେ ଯାହା ରହିଯାଏ ତାହା କ'ଣ ରହିଲା, ତାହାର କୌଣସି ନାମ ନାହିଁ । ଏହାର ରହିବା ଅନୁଭବ କାହାକୁ ହେବ, ଏହା ପ୍ରକାଶ କରି ହେବନାହିଁ; କାରଣ ଅନୁଭବ କଲା ବାଲା କୌଣସି ଅନୁଭବ ବସ୍ତୁର ଅଭାବରେ, ନିଜେ ଦ୍ରଷ୍ଟାର ଅଭାବରେ ଦେଖିବ କାହାକୁ ? ଯେବେ ଦୃଷ୍ଟି ଏବଂ ଦ୍ରଷ୍ଟା ଦୁହେଁ ଅନୁପସ୍ଥିତ ତେବେ ଦର୍ଶନର କାର୍ଯ୍ୟ ହୋଇନପାରେ । ଏଠାରେ ଯାହାକିଛି ଅଛି ତାହା ଅନିର୍ବଚନୀୟ । ତାହାକୁ କହିବା, ଶୁଣିବା ଏବଂ ଜାଣିବାର ପ୍ରୟୋଜନ ନାହିଁ ।

"ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ"

(ତୈତ୍ତୀରୀୟୋପନିଷଦ- ୨/୯/୧)

ମନ ସହିତ ବୁଦ୍ଧି ଏବଂ ସମସ୍ତ ଇନ୍ଦ୍ରିୟ ଯେଉଁଠାକୁ ଯାଇ ଫେରିଆସନ୍ତି ଏହା ସାଙ୍କେତିକ ରୂପେ ବ୍ରହ୍ମ ସ୍ୱରୂପ ।



# ୫୦. ନାମ ସାଧନା

ନାମ କେବଳ ଭଗବାନଙ୍କ ନାମ । ସାଧନା ଦୃଷ୍ଟିରୁ ଭଗବାନଙ୍କ ଭିନ୍ନଭିନ୍ନ ନାମରେ ପରସ୍ପର କୌଣସି ଭେଦ ନାହିଁ । ନାମ ଜୀବ ଏବଂ ଶିବ ମଧ୍ୟରେ ଏକ ଶୃଙ୍ଖଳା । ନାମ ସାଧନ ଏବଂ ନାମ ସାଧ୍ୟ ମଧ୍ୟ । ନାମ ସଗୁଣ ଏବଂ ନିର୍ଗୁଣ । ନାମର ପ୍ରାରମ୍ଭ ସଗୁଣରୁ ହୋଇଥାଏ ଏବଂ ନିର୍ଗୁଣରେ ଶେଷ ହୋଇଥାଏ । ଆରମ୍ଭ ସଗୁଣରୁ କହିବାର ତାତ୍ପର୍ଯ୍ୟ ଏହିକି, ଭଗବାନ ମୂଳତଃ ନିର୍ଗୁଣ ଏବଂ ନିରାକାର । ଯେବେ ସେ ସଗୁଣ ହୁଅନ୍ତି ତେବେ ତାଙ୍କ ନାମ ଓ ରୂପ ହୁଏ । ପରେ ଯେବେ ସଗୁଣ ରୂପ ତିରୋହିତ ହୋଇଗଲା ତେବେ ବି ନାମ ରହିଗଲା । ଅତଃ ସେ ନିର୍ଗୁଣ ହୋଇଥାଆନ୍ତି । ସଗୁଣ ଭକ୍ତି ହେଉ କି ନିର୍ଗୁଣ ଭକ୍ତି ହେଉ ଦୁଇଟି ପାଇଁ ନାମ ହିଁ ଆଧାର । ନାମ ସତ୍‌ସଙ୍ଗର ଭିତ୍ତି ଏବଂ ଶିଖର ମଧ୍ୟ । ନାମ ଆମ ବୃତ୍ତି ଏବଂ ଭଗବାନଙ୍କୁ ସଂଯୁକ୍ତକାରୀ ଶୃଙ୍ଖଳା । ବିବାହ ପରେ ପତ୍ନୀ ଯେପରି ପତି ସହ ଏକରୂପ ହୋଇଯାଏ ସେହିପରି ବୃତ୍ତି ନାମ ସହ ଏକତ୍ୱ ହୋଇ ତାକୁ ନାମ ରୂପରେ ପରିବର୍ତ୍ତିତ କରି ଦେଇଥାଏ । ନାମ ଅତ୍ୟନ୍ତ ସୂକ୍ଷ୍ମ ଏବଂ ବୃତ୍ତି ମଧ୍ୟ ସୂକ୍ଷ୍ମ ଅତଃ ନାମ ଜପ ଦ୍ୱାରା ବୃତ୍ତିର ସୂକ୍ଷ୍ମତା ବୃଦ୍ଧିହୁଏ । ବୃତ୍ତିରେ ସୁଧାର ଘଟିଲେ ଚିତ୍ତ ଶାନ୍ତ ହେବ, ଚିତ୍ତ ଶାନ୍ତ ହେବା ପରେ ନିଷ୍ଠା ସୃଷ୍ଟିହେବ । ଅର୍ଥାତ୍ ଦେହ ବୃତ୍ତିର ବିସ୍ମୃତ ହେବା ଦେହ ବୃତ୍ତିକୁ ପାର ହେବା । ନାମ ଜପ କରୁକରୁ ଏପରି ସ୍ଥିତି ପ୍ରାପ୍ତ ହେବ ଯେ ନିଜେ କେଉଁଠି ଅଛି ତାକୁ ଜଣାଯିବ ନାହିଁ ଏବଂ ସାଧକର ଚିତ୍ତ ଭଗବାନଙ୍କ ସ୍ମରଣରେ ଅଛି କି ନାହିଁ ତାହା ମଧ୍ୟ ନିଜକୁ ଅଗୋଚର ହେବ । ମନର ଅନନ୍ୟସ୍ଥିତି । ମନ ଦ୍ୱାରା ଆମେ ସକଳ ଅନୁଭବ ଜାଣୁ କିନ୍ତୁ ଯେଉଁଠି ମନ ନାହିଁ ଅର୍ଥାତ୍ ମନ ଈଶ୍ୱର ସତ୍ତାରେ ବିଲୀନ ସେ କାଳର ଅନୁଭବ ମନ କିପରି ଜାଣିବ ଅଥବା ପ୍ରକାଶ କରିପାରିବ ?



# ୫୧. ନିଜକୁ ଜାଣିବା

ଅଧ୍ୟାତ୍ମ ଅର୍ଥାତ୍ ଆସ୍ତିକତା । ଆସ୍ତିକତାର ଅର୍ଥ ଈଶ୍ୱର ବିଶ୍ୱାସ ଏବଂ ଈଶ୍ୱର ବିଶ୍ୱାସର ଅର୍ଥ ହେଉଛି, ଏକ ଏପରି ନ୍ୟାୟକାରୀ ସତ୍ତାର ଅସ୍ତିତ୍ୱକୁ ସ୍ୱୀକାର କରିବା, ଯେ ସର୍ବବ୍ୟାପୀ ତଥା କର୍ମଫଳ ଅନୁସାରେ ଉପରକୁ ଉଠିବା କିମ୍ବା ତଳକୁ ଖସିବାର ସୁ ଅବସର ପ୍ରଦାନ କରିଥାଆନ୍ତି । ଯଦି ଦୃଢ଼ଭାବେ ବିଶ୍ୱାସ କରି ନିଆଯାଏ ତେବେ ଆମର ବିବେକ ବୁଦ୍ଧି କୁକର୍ମ ଦିଗକୁ ପ୍ରସାରିତ ହେବନାହିଁ । ଆସ୍ତିକତା ଆମକୁ ଏହି ନିଷ୍କର୍ଷରେ ପହଞ୍ଚାଏ ଯେ ଯଦି ଆମେ ଜୀବନରେ ସୁଖ ଶାନ୍ତି ଚାହୁଁଥାଉ ତେବେ ସୁଖ ପ୍ରଦାନକାରୀ ଈଶ୍ୱରୀୟ ବିଧି-ବ୍ୟବସ୍ଥାକୁ ପାଳନ କରିବା । ତାକୁ ଲଙ୍ଘନ କରିବା ଅଥବା ଅନାଚାର ଆପଣେଇବାର ପ୍ରୟାସ ନକର । ଆସ୍ତିକତାର ତତ୍ତ୍ୱଜ୍ଞାନ ଆମ ଅନ୍ତରଂଗରେ ଉତ୍କୃଷ୍ଟତା ଏବଂ ବହିରଂଗରେ ଆତ୍ମନିର୍ଭରତାର ସମାବେଶ କରାଇଥାଏ ।

ମନୁଷ୍ୟ ଈଶ୍ୱର ସୃଷ୍ଟ ଏବଂ ଈଶ୍ୱର ପୁତ୍ର । ତାହା ମଧ୍ୟରେ ପିତାଙ୍କର ସମସ୍ତ ବିଭୂତି ବୀଜରୂପେ, ସୂକ୍ଷ୍ମରୂପେ ବିଦ୍ୟମାନ । ଆବଶ୍ୟକତା ହେଉଛି କି ଅନ୍ତଃକରଣରେ ଆଚ୍ଛାଦିତ ଦୂଷିତ ବିଚାରକୁ ହଟାଇଦେବା । ଯାହା ଆମକୁ ଦିବ୍ୟତ୍ୱରୁ ବଂଚିତ କରୁଛି । ତପଶ୍ଚର୍ଯ୍ୟା ଏହି ମଳିନତାକୁ ସ୍ୱଚ୍ଛ କରାଇଥାଏ । ଧାର୍ମିକତାର କଳେବର ଯେତେ ବ୍ୟାପକ ହେଉନା କାହିଁକି, ତଥ୍ୟ କେବଳ ଏତିକି ଯେ ବ୍ୟକ୍ତି ନିଜର ମହତ୍ତ୍ୱାକୁ ବୁଝିବା ଏବଂ ତଦନୁରୂପ ଆଚରଣ ଆପଣେଇବା । ମନୁଷ୍ୟର ସୌଭାଗ୍ୟ, ଦୁର୍ଭାଗ୍ୟ, ଉତ୍ଥାନ-ପତନ ଏହି ତଥ୍ୟ ଉପରେ ଆଧାରିତ । ସମାଜର ଶୃଙ୍ଖଳା, ପ୍ରଗତି, ସୁଖଶାନ୍ତିର ଆଧାର ହିଁ ଏହା ।



# ୫୨. ସନ୍ତୋଷ

ଆଜିକାଲି ଏପରି କୁହାଯାଏ କି ଅଳସୁଆ ଏବଂ ଅକର୍ମଣ୍ୟ ଲୋକ ନିଜ ଦୁର୍ବଳତାକୁ ଲୁଚାଇବା ପାଇଁ ସନ୍ତୋଷର ଦୁହା (ଡୁହା) ଦେଇଥାଆନ୍ତି; ବସ୍ତୁତଃ ସନ୍ତୋଷ ଏପରି ନିକମା ଲୋକଙ୍କ କାର୍ଯ୍ୟର ଚିଜ । ଏହି ସନ୍ତୋଷର ଭାବନା ହିଁ ଭାରତବାସୀଙ୍କୁ କର୍ତ୍ତବ୍ୟ ବିମୁଖ କରି ପରାଧୀନତାର କଠିନ ବେଡ଼ିରେ ଛନ୍ଦି ଦେଇଥିଲା । ଏଥିରୁ ମୁକ୍ତ ହେବାର ଉପାୟ ଅସନ୍ତୋଷର ବୃଦ୍ଧି ଏବଂ ବିସ୍ତାର ହିଁ ହୋଇଥିଲା । ଅସନ୍ତୋଷ ହିଁ ଉନ୍ନତିର ମୂଳ । ଅସନ୍ତୋଷ ହିଁ ଉପସ୍ଥିତ ସ୍ଥିତିର ବାସ୍ତବ ଅନୁଭବ କରାଇ ଆଗକୁ ଗତି କରିବାକୁ ପ୍ରୋତ୍ସାହିତ କରିଥାଏ । ଅସନ୍ତୋଷରୁ ହିଁ ଜୀବନରେ ଜାଗୃତି ଆସିଥାଏ ଏବଂ ଅସନ୍ତୋଷ ହିଁ ମନୁଷ୍ୟକୁ କର୍ତ୍ତବ୍ୟ ପରାୟଣ କରି ସୁଖୀ କରାଏ । ଅସନ୍ତୋଷର ହିଁ ପରିଷ୍କୃତ ରୂପ ମହତ୍ତ୍ୱାକାଂକ୍ଷୀ ।

ଏହା ସତ୍ୟ ଯେ ଲକ୍ଷ୍ୟ ପ୍ରାପ୍ତି କରିବା ପାଇଁ ଚିତ୍ତରେ ଏକପ୍ରକାର ଅସନ୍ତୋଷ ବୃତ୍ତି ଜାଗିବା ଉଚିତ; କିନ୍ତୁ ଏହି ଲକ୍ଷ୍ୟ କ'ଣ ? ଏହା ସବୁଠାରୁ ବଡ଼ ବିଚାରଣୀୟ ପ୍ରଶ୍ନ । ବିଷୟ ସୁଖ ପାଇଁ ଅସନ୍ତୋଷର ଜାଗୃତି କଦାପି ଲାଭଦାୟକ ନୁହେଁ । କାରଣ ବିଷୟ ସୁଖ ବାସ୍ତବିକ ସୁଖ ହିଁ ନୁହେଁ । ବିଷୟ ସୁଖ ନିମନ୍ତେ ଯେତେ ଅସନ୍ତୋଷ ବଢ଼ିବ, ତାହାକୁ ପାଇବା ପାଇଁ ଯେତେ ଚେଷ୍ଟା ହେବ ଏବଂ ଯେତେ ବିଷୟ ପ୍ରାପ୍ତ ହେବ, ସେତେ ହିଁ ବିଷୟର ଅଭାବ ବଢ଼ିବ । ବିଷୟ (ଦ୍ରବ୍ୟଆଦି) ଯେତେ ମଧ୍ୟ ପ୍ରାପ୍ତି ହେଉ, ଯେତେ ଦୁର୍ଲଭ ବିଷୟ ମିଳିଯାଉ, ମନୁଷ୍ୟର ମନ କଦାପି ତହିଁରେ ତୃପ୍ତ ହୋଇ ପାରେ ନାହିଁ । ରାଜା ଯଯାତି ପୁତ୍ରଙ୍କ ଯୌବନ, ଆୟୁ ନେଇ ହଜାର ବର୍ଷ ପର୍ଯ୍ୟନ୍ତ ବିଷୟ ଭୋଗ ତୃଷ୍ଣାକୁ ଶାନ୍ତ କରିବାକୁ ଚାହିଁଲେ, ତାହା ଉତ୍ତରୋତ୍ତର ବଢ଼ିବାରେ ଲାଗିଲା, ତେବେ ହାହାକାର କରି କହିଲେ-

"ପୂର୍ଣଂ ବର୍ଷ ସହସ୍ରଂମେ ବିଷୟାନ୍ ସେବତେଽସକୃତ୍
ତଥାପି ଚାନୁସବନଂ ତୃଷ୍ଣା ତେଷୁ ପଜାୟତେ ।"

(ଶ୍ରୀମଦ୍‌ଭାଗବତ ୯/୧୯/୧୮)

ମୁଁ ପୂର୍ଣ୍ଣ ସହସ୍ର ବର୍ଷ ନିରନ୍ତର ବିଷୟ ସେବନ କଲି । କିନ୍ତୁ ମୋ'ର ତୃଷ୍ଣା ସମାପ୍ତ ହେଲାନାହିଁ, ତାହା ଓଲଟା ବୃଦ୍ଧିପ୍ରାପ୍ତ ହେବାରେ ଲାଗିଲା ।

ଏଣୁ ଯେଉଁ ବ୍ୟକ୍ତିକୁ ବାସ୍ତବ ସୁଖର ଇଚ୍ଛା ରହିଛି, ସେ ଭୋଗତୃଷ୍ଣାକୁ ଦମନ କରି ଭଗବତ୍ ବିଧାନ ଅନୁସାରେ ଯାହା ଶୁଭା-ଶୁଭ, ସୁଖ-ଦୁଃଖ ପ୍ରାପ୍ତ ହେଲା ତହିଁରେ ସନ୍ତୁଷ୍ଟ ରହିବା ଉଚିତ । (ଶ୍ରୀହନୁମାନ ପ୍ରସାଦ ପୋଦ୍ଦାର)



# ୫୩. ଭଗବାନଙ୍କ ନିବାସ

ଥରେ ଭଗବାନ ଦେବର୍ଷି ନାରଦଙ୍କୁ ସାଦର ପୁଚ୍ଛାକଲେ- ହେ ନାରଦ ! ଆପଣ ତ ବିଶ୍ୱ ବ୍ରହ୍ମାଣ୍ଡର କୋଣ- ଅନୁକୋଣ ଭ୍ରମଣ କରୁ ଅଛନ୍ତି । ଆପଣଙ୍କୁ ସଂସାରର କୌଣସି ସ୍ଥାନ ଅଗୋଚର ନାହିଁ । ଆପଣ କୁହନ୍ତୁ ମୁଁ କେଉଁଠି ବାସ କରେ ?

ଏହି ପ୍ରଶ୍ନରେ ନାରଦ ଖୁବ୍ ଗମ୍ଭୀର ହୋଇଗଲେ । ବିଚାର- ମନ୍ଥନ ପରେ ସେ ଏହି ସଂସାର ସାଗରରେ ଭଗବାନଙ୍କ ପାଇଁ ଶାନ୍ତ ତଥା ସୁଖଦ ସ୍ଥାନ ବୁଝିପାରିଲେ କି- ପ୍ରାଣୀମାନଙ୍କ ହୃଦୟ ଏବଂ କହିଲେ- ପ୍ରଭୋ ! ଆପଣ ସକଳ ହୃଦୟରେ ବିହାର କରନ୍ତି । ନାରଦଙ୍କ କଥା ପ୍ରଭୁଙ୍କୁ ପ୍ରୀତ କଲା ଏବଂ ସେହି ସମୟରୁ ସେ ସମସ୍ତ ପ୍ରାଣୀଙ୍କ ଅନ୍ତଃକରଣରେ ଯାଇ ରହିଲେ । ହୃଦୟାକାଶର ପବିତ୍ର ସୁକୋମ କମଳ ଦଳ ଉପରେ- "ହୃତ୍ ପୁଣ୍ଡରୀକ ମଧ୍ୟସ୍ଥା ପ୍ରାତଃ ସୂର୍ଯ୍ୟ ସମ ପ୍ରଭାମ୍" ରୂପରେ ସେ ବିରାଜମାନ ହେଲେ, କିନ୍ତୁ ମନୁଷ୍ୟ ଭଗବାନଙ୍କୁ ବାହାରେ ହିଁ ସନ୍ଧାନ କରି ଭ୍ରମୁଛି । ବାହାରେ ଘାଟ-ବାଟ, ଧନ-ଦୌଲତ, ସନ୍ତତି- ସମ୍ପଦରେ, ପଦ- ପ୍ରତିଷ୍ଠାରେ, ମାନ-ସମ୍ମାନରେ ଏବଂ ବିବିଧ ପ୍ରକାର ସୁଆଁଗ, ଆଡ଼ମ୍ବରରେ ଉତ୍‌ଫୁଲ୍ଲିତ ହୋଇ ନିଜ ସୁଖ ଶାନ୍ତି ପାଇଁ ଈଶ୍ୱରଙ୍କୁ ଖୋଜୁଛି । ମଠ, ମନ୍ଦିର, ମସ୍‌ଜିଦ୍, ଗୀର୍ଜା, ଗୁରୁଦ୍ୱାର, ବନ, ପର୍ବତ ଆଦିରେ ଭଗବାନଙ୍କୁ ଖୋଜି ଚାଲିଛି, ପୁନଃ ସେ ତାଙ୍କୁ ପାଇ ପାରୁନାହିଁ । ଅଥଚ ସେ (ଈଶ୍ୱର) ତା' ଅନ୍ତରାତ୍ମାରେ ନିବାସ କରୁଅଛନ୍ତି ।

ବେଦ, ପୁରାଣ, ଉପନିଷଦ, ଶ୍ରୁତି, ସ୍ମୃତି ଆଦି ଆର୍ଷ ଗ୍ରନ୍ଥମାନଙ୍କରେ ମଧ୍ୟ ଭଗବାନଙ୍କ ନିବାସ ସ୍ଥାନ ରୂପେ ପ୍ରାଣୀଙ୍କ ହୃଦୟ ଦିଗକୁ ସ୍ପଷ୍ଟ ନିର୍ଦ୍ଦେଶ ରହିଛି । ଭଗବତ୍ ଗୀତା (ଅ-୧୦/୨୦)ରେ ଶ୍ରୀକୃଷ୍ଣ କହୁଛନ୍ତି-

**"ଆହମାତ୍ମା ଗୁଡ଼ାକେଶ ସର୍ବଭୂତାଶୟ ସ୍ଥିତଃ ।।"**

ଅର୍ଥାତ୍- ହେ ଅର୍ଜୁନ ! ମୁଁ ବାସୁଦେବ ସଂପୂର୍ଣ୍ଣ ପ୍ରାଣୀଙ୍କ ହୃଦୟରେ ସ୍ଥିତ ସବୁରି ଆତ୍ମା । ଗୀତା- ୧୩/୧୭, ୧୫/୧୫, ୧୮/୬୧ରେ ମଧ୍ୟ ଏହି ଉକ୍ତି ଦେଖିବାକୁ ମିଳେ ।



# ୫୪. ଦୁର୍ଲଭ ମାନବଜନ୍ମ

ମାନବ ଜନ୍ମ ଏତେ ସୁବିଧାପୂର୍ଣ୍ଣ ଯାହା କଳ୍ପନା କରାଯାଇ ନପାରେ । ମନୁଷ୍ୟ ଏପରି ପ୍ରାଣୀ, ଯାହା ପାଖରେ ବିଚାର ରହିଛି, ଧର୍ମାଚରଣ କରିପାରେ, ଯୋଜନା କରିଥାଏ, ସାଧନା ଆପଣେଇପାରେ । ଏ ବିଶେଷତା ଅନ୍ୟ ଯୋନିରେ ନାହିଁ । ମନୁଷ୍ୟ ଜୀବନ ପ୍ରାପ୍ତ ହେବା ସାଧାରଣ କଥା ନୁହେଁ । ଆମେ ନିଜର କ୍ଷମତା, ଯୋଗ୍ୟତାର ଉପଯୋଗ ସାଂସାରିକ ସୁଖ ପାଇଁ କରିଥାଉ । କେବେ ଭାବୁନାହିଁ ଯେ ଧନ, ପତ୍ନୀ, ସୁସ୍ୱାଦୁ ଭୋଜନ, ପଦ, ସମ୍ମାନ ଆଦି ଭୌତିକ ବିଭୂତି କ୍ଷୟଶୀଳ, ପରିବର୍ତ୍ତନଶୀଳ ଏବଂ ବିନାଶଶୀଳ । ଯଦ୍ୟପି ଏଥିରେ ଇନ୍ଦ୍ରିୟ ଜନ୍ୟ ସୁଖ ଭୋଗର କ୍ଷଣିକ ତୃପ୍ତି ହୋଇଥାଏ, କିନ୍ତୁ ଭୋଗ ତ ରୋଗର କାରଣ, ସେ ଦିଗକୁ ଆମର ମନଯାଏ ନାହିଁ । ବାସନା ଭୋଗ- ଇଚ୍ଛା ଉତ୍ତରୋତ୍ତର ବୃଦ୍ଧି ପ୍ରାପ୍ତ ହୋଇଥାଏ । ଜୀବନ ଯାତ୍ରାର କ୍ରମରେ ଏହି ଚିନ୍ତନରେ ବାର୍ଦ୍ଧକ୍ୟ, ବ୍ୟାଧି ଏବଂ ମୃତ୍ୟୁ ଦିଗକୁ ଘେନିଯାଏ । ଭୟ, ଶୋକ ଏବଂ ରୋଗ ଏହା ପଛେପଛେ ଅନୁଧାବନ କରି ସାରା ଜୀବନକୁ ଅସ୍ତବ୍ୟସ୍ତ କରିପକାନ୍ତି ।

ଆମେ ସେହି ସଚ୍ଚିଦାନନ୍ଦର ସ୍ୱରୂପ । ସୁତରାଂ ନିତ୍ୟାନନ୍ଦରେ ସ୍ଥିତ ହେବାପାଇଁ ସଦା ପ୍ରୟାସୀ । କିନ୍ତୁ ଭ୍ରମବଶତଃ ସାଂସାରିକ- ଭୋଗ୍ୟ- ଇନ୍ଦ୍ରିୟ ଗ୍ରାହ୍ୟ ବସ୍ତୁରେ ସେ ଆନନ୍ଦ ସନ୍ଧାନ କରୁଛି । ନିଜେ ନିଜକୁ ଜାଣିବା ହେଉଛି ଆତ୍ମଜ୍ଞାନ । ଶରୀରକୁ ମୁଁ ମାନିବା ହେଉଛି ଅଜ୍ଞାନ । ଆତ୍ମଜ୍ଞାନ ଦ୍ୱାରା ସଦାନନ୍ଦର ସନ୍ଧାନ କରାଯାଇଥାଏ । ଶରୀର ମଧ୍ୟ ସ୍ଥିତ ଆତ୍ମାକୁ ମୁଁ ମାନିବା ବୁଦ୍ଧିମାନୀ । ଶରୀର ନାଶବାନ୍, କିନ୍ତୁ ଆତ୍ମା ଅମର । ଏକ ଅନ୍ଧକାର ଏବଂ ଅନ୍ୟଟି ଆଲୋକ । ଗୋଟିଏର ଜନ୍ମ-ମୃତ୍ୟୁ ରହିଛି ଅପରଟି ଅଜନ୍ମା ସଦାମୋକ୍ଷ । ଏକ ବନ୍ଧନ ଅନ୍ୟଟି ମୁକ୍ତି । ଦୁଇଟି ଯାକ ଭିନ୍ନ ବିପରୀତ ପରିସ୍ଥିତି । ଦୁହେଁ ଦୁଇ ବିପରୀତ ଦିଗକୁ ଘେନିଯାଆନ୍ତି । ଅତଃ ଶ୍ରେୟ ପ୍ରେୟ ମଧ୍ୟରୁ ଶ୍ରେୟକୁ ଗ୍ରହଣ କରିବା ବୁଦ୍ଧିମାନର କାର୍ଯ୍ୟ ।



# ୫୫. ଈଶ୍ୱରଙ୍କ ସହ ସମ୍ବନ୍ଧ ବୃଦ୍ଧିକର

ତୁମ ସମ୍ବନ୍ଧରେ କେହି ଆଗ୍ରହୀ ନୁହଁନ୍ତି, ଭାବିରଖ, ଏହି ସ୍ଥିତିଟି ଉତ୍ତମ । ତୁମେ ଭାବନାହିଁ ଯେ ତୁମ ସଂକଟ କାଳରେ ସମଗ୍ର ପୃଥିବୀ ତୁମକୁ ଉଦ୍ଧାର ପାଇଁ ଧାଇଁ ଆସିବ । ସାଧାରଣତଃ ଏପରି ହେବା ଦେଖାଯାଏ ନାହିଁ । ଜାଗ୍ରତ ହୋଇଉଠ ଏବଂ ଈଶ୍ୱରଙ୍କ ଉପରେ ବିଶ୍ୱାସ ରଖ । ଈଶ୍ୱର ଯଦି ତୁମକୁ ସହାୟ ହୁଅନ୍ତି ଏବଂ ସମଗ୍ର ବିଶ୍ୱ ତୁମର ପ୍ରତିକୂଳରେ ଯାଏ ତଥାପି ତୁମେ ସଫଳ ହେବ । ଅପରପକ୍ଷେ ଈଶ୍ୱରଙ୍କ ବିସ୍ମରଣ ଅନ୍ୟ ସକଳ ସହାୟତାରେ ମଧ୍ୟ ତୁମ ସଫଳତା ସଂଭାବନା କ୍ଷୀଣ ବା ଶୂନ୍ୟ । ଈଶ୍ୱରଙ୍କ ସହ ବନ୍ଧୁତା ବୃଦ୍ଧିକର । ଏହା ସର୍ବୋତ୍ତମ ସଂପତ୍ତି । ଥରେ ମାତ୍ର ଯଦି ତାହା ହୋଇଯାଏ, ମାନସିକ ଶାନ୍ତି ତୁମ ହସ୍ତଗତ । ଏବେ ତୁମର ସବୁକିଛି ପ୍ରାପ୍ତ ହୋଇଗଲା, ଭୟନଷ୍ଟ ହୋଇଗଲା ଏବଂ ଅସ୍ଥିରତା ମଧ୍ୟ ସମାପ୍ତି ହେଲା ।

ସର୍ବତ୍ର ଈଶ୍ୱର ଦର୍ଶନ କର । ପ୍ରତିଟି ସ୍ଥାନରେ ଏବଂ ପ୍ରତ୍ୟେକଙ୍କଠାରେ ଏକାତ୍ମ ଭାବ ଅନୁଭବ କର । ତୁମେ ସମଗ୍ର ସୃଷ୍ଟିରୁ ବିଚ୍ଛିନ୍ନ ନୁହଁ । ତୁମ ଭିତରେ ଥିବା ରହାସ୍ୟାତ୍ମକ ନିୟମର ଅନ୍ୟନାମ ଈଶ୍ୱର । ତାକୁ ତୁମେ ଜୀବନ କୁହ, ଚେତନା କୁହ, ସ୍ଥିତି କୁହ, ଜୀବ କୁହ, ଜୀବାତ୍ମା କୁହ । ଏହି ରହସ୍ୟମୟ ନିୟମ ହେଉଛି ସର୍ବବ୍ୟାପକ, ମୂଳଭୂତ, ସେ କାରଣ ଓ ଫଳର ଊର୍ଦ୍ଧ୍ୱରେ । ଆନନ୍ଦ ଅନୁଭବ କର; ଭାବ ଏପରି ଭାବେ ବ୍ୟକ୍ତ କର ଯେ ତୁମ ଭିତରେ ଥିବା ପ୍ରାଣସତ୍ତା ଯେପରି ଉତ୍ତମ ଏବଂ ମହିମାମୟ ହୋଇଯିବ । ତୁମ ଭିତରେ ସେ ନିବାସ କରିଅଛନ୍ତି । ତୁମର ସକଳ କ୍ଷୁଦ୍ରତା, କୁଟିଳତା, ଧୂର୍ତ୍ତତା, ସ୍ୱାର୍ଥପରତା ଯାହା ବ୍ୟକ୍ତିତ୍ୱର ନ୍ୟୂନ ସ୍ଥିତିରେ ପରିଦୃଷ୍ଟ ସେ ସମସ୍ତ ପରିହାର କର । ଅନୁଭବ କର ଯେ, ଗୋଟିଏ ମଧ୍ୟରେ ସମଗ୍ର ଚେତନକୁ ଅନୁଭବ କର । ତୁମ ଜୀବନ ଯଥୋଚିତ ମାର୍ଗରେ ପରିଚାଳିତ ହେବାକୁ ଲାଗିବ, ତୁମ ଆଧାତ୍ମିକ ଜୀବନର ପୁନର୍ବିନ୍ୟାସ ହେବ । ତୁମ ଇପ୍ସିତ ମାନସିକ ସକଳଶାନ୍ତି ପ୍ରାପ୍ତ କରିବ ।



# ୫୬. ନୈତିକ ଜୀବନର ମହାନତା

ନୈତିକତା କ'ଣ ? ଏହାର ସିଧା ଉତ୍ତର ହେଉଛି- ସମସ୍ତ ସାମାଜିକ ହିତ କଥା ଯେ ଭାବନ୍ତି, ସମସ୍ତଙ୍କ ପ୍ରଗତି ପାଇଁ ତଦନୁରୂପ ଆଚରଣ କରିବାର ନାମ ନୈତିକତା, ଯାହା ବ୍ୟକ୍ତିଗତ ପରିଧିରେ ସୀମାବଦ୍ଧ ନହୋଇ ସାମାଜିକ ଏବଂ ରାଷ୍ଟ୍ରୀୟ ପ୍ରେମ ରୂପେ ପ୍ରସ୍ଫୁରିତ ହୋଇଥାଏ ଏବଂ ଯଦ୍ୱାରା ସମଗ୍ର ସମାଜର ପ୍ରଗତିର ମାର୍ଗ ଆଲୋକିତ ହୋଇଥାଏ । କର୍ମଠତା, ସଚ୍ଚରିତ୍ରତା ଏବଂ ଆଦର୍ଶବାଦର ଆଧାରରେ ଏହାର ମୂଲ୍ୟାଙ୍କନ ହୋଇଥାଏ । ସାମାନ୍ୟ ନାଗରିକ ପରି ସରଳ ଜୀବନ ଅତିବାହିତ କରିବା, ଉତ୍କୃଷ୍ଟ ଚିନ୍ତନ କରିବା, ଆଦର୍ଶ ଚରିତ୍ରର ଗରିମାର ବଜାୟ ରଖିବା, ଏହିପରି ଯୋଜନା କରି ଚଳିବା, ଯାହାର ଅନୁସରଣରେ ଅନ୍ୟମାନେ ଉନ୍ନୀତ ହୁଅନ୍ତି, ଆଗକୁ ଯାଆନ୍ତି- ଏହା ହିଁ ସଂକ୍ଷେପରେ ନୈତିକତାର ସାର ।

କୌଣସି ରାଷ୍ଟ୍ରର ପ୍ରଗତି ଏବଂ ସମୃଦ୍ଧି ସେଠାକାର ନାଗରିକଙ୍କ ଉପରେ ନିର୍ଭର କରିଥାଏ । ରାଷ୍ଟ୍ରୀୟ ବିକାଶ ପାଇଁ ନିର୍ମିତ ଯୋଜନାର ଉପଯୋଗିତା ରହିଛି; କିନ୍ତୁ ଏହାର ସଫଳତା ନାଗରିକ ତଥା ନିବାସୀଙ୍କ ଚରିତ୍ର ନିଷ୍ଠା ଉପରେ ନିର୍ଭର କରିଥାଏ । ଯୋଜନା କେତେ ସଶକ୍ତ ଏବଂ ସମର୍ଥ ହେଉନା କାହିଁକି, ତାହାର ସଫଳତା ସେ- ଯାବତ୍ ସନ୍ଦିଗ୍ଧ ହୋଇ ରହିଥାଏ, ଯେ ଯାବତ୍ ବ୍ୟକ୍ତିଙ୍କ ନୈତିକ ସ୍ତର ଅଧୋମୁଖୀ ହୋଇ ରହିଥାଏ । ଅତଃ ବ୍ୟକ୍ତିର, ସମାଜର, ରାଷ୍ଟ୍ରର ସ୍ଥାୟୀ ପ୍ରଗତି ପାଇଁ ସର୍ବ ପ୍ରଥମ ନୈତିକ ଆଧାର ସୁଦୃଢ଼ ହେବା ଆବଶ୍ୟକ । ନୈତିକତା ଅନ୍ତର୍ଗତ ଏ ସମସ୍ତ ତତ୍ତ୍ୱ ସମାହିତ, ଯାହା ବ୍ୟକ୍ତି ସମାଜ ଏବଂ ରାଷ୍ଟ୍ରର ସର୍ବାଙ୍ଗୀନ ବିକାଶରେ ସହାୟକ ହୋଇଥାଏ । ବସ୍ତୁତଃ ବ୍ୟକ୍ତିତ୍ୱ ବିକାଶର ମୂଳାଧାର ହିଁ ନୈତିକତା ।



# ୫୭. ବେଦ ଆଧାରିତ ଭାରତୀୟ ସଂସ୍କୃତି

ଭାରତୀୟ ସଂସ୍କୃତି ବେଦ ଉପରେ ଆଧାରିତ । ଆସ୍ତିକ, ଆର୍ଯ୍ୟଙ୍କ ଶ୍ରଦ୍ଧାମୟୀ ଏବଂ ବିଶ୍ୱାସମୟୀ ବୁଦ୍ଧି ଅନୁସାରେ ବେଦ ଅପୌରୁଷେୟ । ଏହା ସାକ୍ଷାତ୍ ବ୍ରହ୍ମାଙ୍କ ବାଣୀ । ଆମ ମନ୍ତ୍ରଦ୍ରଷ୍ଟା, ତପଃପୂତ ଋଷିମାନଙ୍କୁ ପରମାତ୍ମାଙ୍କ ଦ୍ୱାରା ଯେଉଁ ଶାଶ୍ୱତ ଏବଂ ଅଲୌକିକ ଜ୍ଞାନ ପ୍ରଦାନ କରାଗଲା, ତାହାର ଅଭିବ୍ୟକ୍ତି ବେଦରେ ହୋଇଅଛି । ବେଦ ସଂସାରର ପ୍ରାଚୀନତମ ଧର୍ମଗ୍ରନ୍ଥ । ଯାହାର ପ୍ରାମାଣିକତା ସମଗ୍ର ହିନ୍ଦୁଜାତି ପାଇଁ ସର୍ବମାନ୍ୟ । ବେଦରେ ସମସ୍ତ ସାଧନା, ଜ୍ଞାନ, କର୍ମ, ଉପାସନା ପଦ୍ଧତି, ମାନବୀୟ କର୍ତ୍ତବ୍ୟ ତଥା ଆଚାର ବିଚାରର ସୂତ୍ର ସଂକଳିତ । ଆମର ଆଦି କାଳୀନ ଋଷି ଏବଂ ବ୍ରାହ୍ମଣ ସ୍ତୋତା-ସ୍ତୁତି ଗାୟକ ଥିଲେ । ଏ ହେତୁ ବେଦର ଋଚା ବିବିଧ ପ୍ରସଂଗ ରାଗାତ୍ମକ ରୂପେ ପ୍ରସ୍ତୁତ ହୋଇଛି । ଋକ୍‌ବେଦ ଋକ୍ ଉପରେ ଆଧାରିତ ହେବା କାରଣରୁ ସ୍ତୁତିମୂଳକ । ଏହା ସ୍ତୋତାଙ୍କ ସ୍ତୁତିରେ ପରିପୂର୍ଣ୍ଣ, ଯାହାଦ୍ୱାରା ସୃଷ୍ଟି ଏବଂ ପ୍ରକୃତିର ବିବିଧ ଶକ୍ତି ଯଥା- ଅଗ୍ନି, ବାୟୁ, ଦୈବ, ପୃଥିବୀ, ଚନ୍ଦ୍ର, ଅଦିତି, ଋତ୍, ସତ୍ୟ ଆଦି ସମ୍ବନ୍ଧରେ ପ୍ରଚୁର ଜ୍ଞାନରାଶି ସଂଚିତ ହୋଇଅଛି । ଋଗ୍‌ବେଦକୁ ଜ୍ଞାନକାଣ୍ଡର ଭଣ୍ଡାର କୁହାଯାଏ । ଯଜୁର୍ବେଦରେ ଶ୍ରେଷ୍ଠତମ ଆଚାର-ବିଚାର ତଥା କର୍ତ୍ତବ୍ୟ କର୍ମ କରିବାର ନିର୍ଦ୍ଦେଶ ରହିଛି । ଏହା ଯଜୁଷ୍ ଅର୍ଥାତ୍ କର୍ମକାଣ୍ଡର ବେଦ । ସାମବେଦ ମାନବ ହୃଦୟର ରାଗାତ୍ମକ ଅଂଶ ବା ମନୋବୃତ୍ତିର ବିବେଚନ କରିଥାଏ । ଏଣୁ ଏହା ଉପାସନା କାଣ୍ଡର ବେଦ । ଏହିପରି ବେଦ ଏକ ଦିଗରେ ବ୍ରହ୍ମବିଦ୍ୟାର ଆଲୋକ ବିକୀର୍ଣ୍ଣ କରିଥାଏ ତଥା ଅନ୍ୟ ଦିଗରୁ ଲୌକିକ ଜ୍ଞାନ ଅଥବା ଜୀବନର ଯଥାର୍ଥ ସ୍ଥିତି ସମ୍ବନ୍ଧିତ ବିଷୟର ଭଣ୍ଡାର । ଏଣୁ ଏହାକୁ 'ବ୍ରହ୍ମ' ସଞ୍ଜ୍ଞାରେ ବିଭୂଷିତ କରାଯାଇଅଛି ।



# ୫୮. ବୈଚିତ୍ର୍ୟ ମୟୀ ଚିତ୍ତ

ମନୁଷ୍ୟ ହିଁ ସୃଷ୍ଟିର ସମସ୍ତ ଇନ୍ଦ୍ରିରେ ପରିପୂର୍ଣ୍ଣ ଏବଂ ବିକଶିତ ମନନଶୀଳ, ଜ୍ଞାନ ବୁଦ୍ଧିଯୁକ୍ତ କର୍ମଶୀଳ କର୍ମଯୋନି ସଂପନ୍ନ ହୋଇଥିବାରୁ ଅନ୍ୟ ଯୋନିମାନଙ୍କ ତୁଳନାରେ ଶ୍ରେଷ୍ଠତମ ପ୍ରାଣୀ; କିନ୍ତୁ ମନୁଷ୍ୟର ଚିତ୍ତ (ମନ)ର ପ୍ରକୃତି ସ୍ୱାଭାବିକ ରୂପେ ଚଞ୍ଚଳ । ଏହି ଚଞ୍ଚଳତା ହିଁ ତାହାକୁ ଅଧ୍ୟାତ୍ମ ଜ୍ଞାନ ପ୍ରାପ୍ତି, ପ୍ରଗତି ତଥା ମୋକ୍ଷ- ମୁକ୍ତି ଏବଂ ସମସ୍ତ ପ୍ରକାର ଦୁଃଖରୁ ନିବୃତ୍ତି ପାଇବାର ପରମ ବାଧକ । ମନୁଷ୍ୟ ଏକ ସାଂସାରିକ ଗୃହସ୍ଥ ତଥା ସାମାଜିକ ପ୍ରାଣୀ ହେବା କାରଣରୁ ତା'ର ଚିତ୍ତ (ମନ) ସାଂସାରିକ, ପାରିବାରିକ ସାମାଜିକ ଗତିବିଧିରେ ଲାଗିରହେ । ଜୀବାତ୍ମାର ଗୁଣ, ଇଚ୍ଛା, ପ୍ରଯତ୍ନଜ୍ଞାନ, ପୁରୁଷାର୍ଥ, ନିଶ୍ଚୟ, ଜୀବନ କାର୍ଯ୍ୟନିର୍ବାହ, ସ୍ମରଣ, କ୍ଷୁଧା, ତୃଷା, ଇନ୍ଦ୍ରିୟ ସଂଚାଳନ, ସୁଖ- ଦୁଃଖ, ସଂକଳ୍ପ ବିକଳ୍ପ ଏବଂ ନିଦାନ ଆଦି- ଏ ସମସ୍ତ ହେବା କାରଣରୁ କର୍ମଶୀଳ ବ୍ୟକ୍ତିର ଚିତ୍ତ (ମନ) ଏବଂ ଇନ୍ଦ୍ରିୟ ବହିର୍ମୁଖୀ ହେବା କାରଣରୁ ଈଶ୍ୱର ଦ୍ୱାରା ବିଷୟକୁ ଗ୍ରହଣ କରିବା ହେତୁ ରଚନା କରିଅଛନ୍ତି । ଅତଃ ଏହାର ବହିର୍ମୁଖୀ ହେବା ତଥା ବିଷୟରେ ଆନନ୍ଦ ରୁଚି ନେବା କାରଣ ଜୀବାତ୍ମା ଦୁଃଖ, କଷ୍ଟ, କ୍ଳେଶ, ରୋଗ, ଶୋକ, ସନ୍ତାପ, ଭୟ ପ୍ରକୃତିର ସତ୍ତ୍ୱ, ରଜ, ତମ ଗୁଣର ସମସ୍ତ ବିକାର ଏବଂ ଦୋଷରେ ଅନ୍ତର୍ଭୁକ୍ତ ହେବାରୁ ପ୍ରଭାବିତ ହୋଇଥାଏ । ଏଣୁ ଚିତ୍ତର ବୃତ୍ତିଗୁଡ଼ିକ ଯୋଗାଭ୍ୟାସ ଦ୍ୱାରା ବହିର୍ଗମନ ହେବାରୁ ରୋକିବା ଏବଂ ଅନ୍ତର୍ମୁଖୀ କରିଦେବା ତଥା ଇନ୍ଦ୍ରିୟକୁ ଦମନ କରିବା, ବଶରେ ରଖିବା ମନୁଷ୍ୟ ନିମିତ୍ତ ଆବଶ୍ୟକ ତଥା ହିତକାରୀ । ଏହା ତତ୍ତ୍ୱଜ୍ଞାନୀଙ୍କ ମତ । ପାତଂଜଳି ଯୋଗ ଦର୍ଶନରେ ଚିତ୍ତର ବୃତ୍ତିମାନଙ୍କୁ ରୋଧ କରିବା ପାଇଁ ଏହା କୁହାଯାଇଛି- "ଯୋଗଃ ଚିତ୍ତବୃତ୍ତି ନିରୋଧଃ ।" ଚିତ୍ତର ବୃତ୍ତିକୁ ରୋକିବା, ମନକୁ ନିଶ୍ଚଳ ସ୍ଥିର କରିଦେବା- ଏହାକୁ ଯୋଗ କୁହାଯାଏ ।

ଯେ ଯାବତ୍ ଚିତ୍ତର ବୃତ୍ତିଗୁଡ଼ିକ ବାହ୍ୟ ବିଷୟଦିଗକୁ ପ୍ରଧାବିତ ହୋଇଥାଆନ୍ତି, ସେ ଯାବତ୍ ଚିତ୍ତ ଏକାଗ୍ର ହୋଇପାରେ ନାହିଁ । କୌଣସି କାର୍ଯ୍ୟ, ଯୋଗ ଆଦି ପୂର୍ଣ୍ଣରୂପେ ସଫଳ ଏବଂ ସିଦ୍ଧ ହୁଏନାହିଁ । ଚିତ୍ତ ଏକାଗ୍ର ହେବାପରେ ହିଁ ଜୀବାତ୍ମା ସ୍ଥାୟୀ ଶାନ୍ତି ପ୍ରାପ୍ତ କରିଥାଏ ।



# ୫୯. ସଦାଚାର ଜୀବନ ବିକାଶର ମୂଳାଧାର

ମାନବ ଜୀବନରେ ଯେଉଁ ସଦ୍‌ଗୁଣର ଅପେକ୍ଷା ହୋଇଥାଏ, ତନ୍ମଧ୍ୟରୁ ସଦାଚାରର ଅତ୍ୟଧିକ ଏବଂ ତା'ର ଆବଶ୍ୟକତା ମଧ୍ୟ ତଦନୁରୂପ । ଜୀବନଚର୍ଯ୍ୟା ବଞ୍ଚିବାର ଏହି ଅବଧାରଣା କି ଏହି କଳାଦ୍ୱାରା ମାନବ ଜୀବନର ସୁସ୍ଥରତା ନିହିତ । ଜୀବନ ତ କ୍ଷଣଭଙ୍ଗୁର, କିନ୍ତୁ ଦୀର୍ଘ ଜୀବନ ପାଇଁ ସଂଜମିତ ଚର୍ଯ୍ୟା- ଆଚରଣର ମହତୀ ଆବଶ୍ୟକତା ହୋଇଥାଏ । ଏପରି ଜୀବନଚର୍ଯ୍ୟାରେ, ସରଣୀରେ, ମାର୍ଗରେ ସଦାଚାର ହିଁ ଶ୍ରେଷ୍ଠ ମାର୍ଗଦର୍ଶକ । ଆଧ୍ୟାତ୍ମିକ ଚିନ୍ତନ ହେଉ, ନୀତି ସମ୍ବନ୍ଧୀୟ ବିମର୍ଷ ହେଉ, ଅଥବା ଶାରୀରିକ ପରାମର୍ଶ ହେଉ ସର୍ବତ୍ର ସଦାଚାରର ପରିପାଳନ ଶ୍ରେୟସ୍କର ହୋଇଥାଏ । ମହିମା ମଣ୍ଡିତ ଏହି ସଦାଚାର କୌଣସି ନୂତନ ବିଧି ଶିଖାଏ ନାହିଁ, ଏହା ତ ସଜ୍ଜନ ଏବଂ ପୂର୍ବ ପୁରୁଷଙ୍କର ଯେଉଁ ପ୍ରଶସ୍ତ ଜୀବନଚର୍ଯ୍ୟା- ତାହା ହିଁ ହୋଇଥାଏ । ସଦ୍‌ବିଚାର ହେଉଛି ସଦାଚାର । ଯେପରି (ଶିବ ପୁରାଣ ବାୟବୀୟ ସଂ ଉତ୍ତରଂ ୧୪/୫୭)ରେ କୁହାଯାଇଛି ।

ଯସ୍ୟ ଯଦ୍ୱିହିତଂ କର୍ମ ବେଦ ଶାସ୍ତ୍ରେଚ ବୈଦିକୈଃ<br>
ତସ୍ୟ ତେନ ସମାଚାରଃ ସଦାଚାରୋ ନ ଚେତରଃ ॥

ଏହି କଥନର ଅଭିପ୍ରାୟ ସାରତତ୍ତ୍ୱ ଏହିକି- ଦୀର୍ଘାୟୁକୁ ପ୍ରାପ୍ତ ତପଃପୂତ ଋଷି ମହର୍ଷିଙ୍କ ବେଦ- ପୁରାଣ- ସ୍ମୃତି ଅନୁମୋଦିତ ଜୀବନ ସାରଣୀ (ଜୀବନଚର୍ଯ୍ୟା) ହିଁ ସଦାଚାର (ଆଚାର) । ଏହାର ସଂପୁଷ୍ଟି ମହାଭାରତରେ ମଧ୍ୟ ରହିଛି ।

"ସାଧୁନାଂଚ ଯଥାବୃତ୍ତ ମେତଦାଚାର ଲକ୍ଷଣମ୍ ॥"

(ଅନୁ.୧୦୪/୯)

ସଜ୍ଜନଙ୍କ ଦ୍ୱାରା ଆଚରିତ ହେବାରୁ ହିଁ ସଦାଚାର କୁହାଯାଏ ।



# ୬୦. ଈଶ୍ୱରଙ୍କୁ ପ୍ରାର୍ଥନା କର

ପ୍ରତିଦିନ ପ୍ରଭାତରୁ ଶଯ୍ୟାତ୍ୟାଗ କରିବା ସମୟର ଅନ୍ତତଃ ଦୁଇ ମିନିଟ ପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କର । ତୁମର ସ୍ରଷ୍ଟାଙ୍କ ନିମିତ୍ତ ଏହି ଟିକକ ସମୟ ଦେଇ ପ୍ରତିଦିନ ନିଷ୍ଠାର ସହ ପାଳନ କର । ହେ ପ୍ରଭୁ ! ତୁମ ନିର୍ଦ୍ଦେଶରେ ମୁଁ ଯେଉଁ କାର୍ଯ୍ୟ ନିମିତ୍ତ ଅଧିକ ଉପଯୋଗୀ ବିଚାରୁଛି, ସେହି କାର୍ଯ୍ୟରେ ବିନିଯୋଗ କର । ମୁଁ ନିଜକୁ ଶୂନ୍ୟ କରି ଦେଉଛି, ମୋତେ ତୁମ କାର୍ଯ୍ୟରେ ସଂଯୁକ୍ତ କରାଅ । ବହୁବର୍ଷ ତଳେ ଶୁଣିଥିବା ଗୋଟେ ଗୀତର ପାଦଟିଏ- ଯାହାକୁ ସମସ୍ତେ ବିଛଣାରୁ ଉଠିବା ପରେ ସ୍ମରଣ କରିବା ଉଚିତ- "ଆଜ ମେରେ ଗତି ତୁହ୍ମାରି ଆରତୀ ବନ୍‌ଜାଏ ! (ହେ ପ୍ରଭୋ ! ଆଜି ମୋ' ଜୀବନର ଗତି ତୁମ ଚରଣରେ ନିବେଦିତ ହୋଇଯାଉ) ତୁମେ ଯଦି ଏହିପରି ଉଚାରଣ କରିବ ଓ ଈଶ୍ୱରଙ୍କ ପ୍ରତି ପ୍ରାର୍ଥନାକୁ ଦିନ ତମାମ ସ୍ମରଣ କରିବ ତେବେ କୌଣସି ଭୁଲ କାର୍ଯ୍ୟ ବା ପ୍ରମାଦିକ ପଥରେ ପାଦଦେବା ପୂର୍ବରୁ ଅନ୍ତତଃ ଦୁଇଥର ଭାବିବ, ତେବେ ପ୍ରମାଦରୁ କ୍ଷାନ୍ତ ହୋଇପାରିବ । ଅପରପକ୍ଷେ ଉତ୍ତମରୁ ଉତ୍ତମ କାର୍ଯ୍ୟରେ ସଂପୃକ୍ତି ହୋଇ ପାରିବ ତଥା ଦିନର ପରିସମାପ୍ତିରେ ଈଶ୍ୱରଙ୍କୁ ଅର୍ପଣ ହେବାକୁ ଥିବା କର୍ମ- କୁସୁମ ମାଳାରେ ଅଧିକରୁ ଅଧିକ କୁସୁମ ସଂଯୁକ୍ତ ହୋଇଯିବ । ଜୀବନରେ ଆସୁଥିବା ଅଭିଜ୍ଞତାକୁ ଗ୍ରହଣ କର । ବିମନା ହୁଅନା, ଅମଙ୍ଗ ହୁଅନା, ଦୁଃଖୀ ହୁଅନା, ଅନ୍ୟପକ୍ଷରେ ଆନନ୍ଦରେ ଅଧୀର ହୁଅନା । ଯଦି କାହାରି ଉପରକୁ ଲୋଲୁପ ଦୃଷ୍ଟି ପକାଇଲ ତେବେ ଜାଣ, ସଙ୍କଟକୁ ନିମନ୍ତ୍ରଣ କଲ । ଆପେକ୍ଷିକ ଯୋଜନାରେ ସର୍ବଦା ଘାତ-ପ୍ରତିଘାତ ରହିଛି । ତୁମେ ଯଦି ଏବେ ହସିବ, ପରେ କାନ୍ଦିବ ନିଶ୍ଚୟ । ପୃଥିବୀରେ ଯଦି କୌଣସି ସ୍ଥାନ ଉଚ୍ଚ କରିବାକୁ ଅଛି, ଅନ୍ୟ ଏକ ସ୍ଥାନ ଗାତ ଖୋଳିବା ପ୍ରୟୋଜନ । ଉଚ୍ଚ ହେବ ଅଥଚ କୌଣସି ସ୍ଥାନ ଖୋଳା ହେବନାହିଁ, ଏହା ଅସମ୍ଭବ । ଅଶ୍ରୁ ବ୍ୟତିରେକେ ହାସ୍ୟ କାହିଁ ? ସୁତରାଂ ସର୍ବଦା ଏକ ସମ ସ୍ଥିତିରେ ରହିଯାଅ । ରହିବାର ଅଭ୍ୟାସ କର, ପ୍ରଶାନ୍ତ ରୁହ । ତଥା କଥିତ ଖିଲିଖିଲି ହସ ବୋ ହୋ ହୋ ହସଠାରୁ ପ୍ରଶାନ୍ତ ଯଥେଷ୍ଟ ଉନ୍ନତତର । କାରଣ ସେହି ଖୁସିର ଅନ୍ତରାଳରେ ସେହି ମୁହୂର୍ତ୍ତରେ ହିଁ ଦୁଃଖଟିଏ ଲୁକ୍‌କାୟିତ ହୋଇ ରହିଥାଏ ।



# ୬୧. ଆସ୍ତିକତା ଓ ଭାରତୀୟ ସଂସ୍କୃତି

ଆର୍ଯ୍ୟ ଜାତି ସଦା ଆସ୍ତିକ ଥିଲେ । ହିନ୍ଦୁ ସଦୈବ ଆଶାପୂର୍ଣ୍ଣ, ବିଶ୍ୱାସୀ ଆସ୍ତିକ ରହିଆସିଛି । ଏହା କେବେ ଶୂନ୍ୟବାଦୀ ନାସ୍ତିକତାରେ ବିଶ୍ୱାସ କରିନାହିଁ । 'ଅସ୍ତି', 'ଅସ୍ତି', 'ଅଛି', 'ଅଛି' ତାହାର ଅନ୍ତରାତ୍ମାରେ ସମାବିଷ୍ଟ ହୋଇନାହିଁ 'ନାସ୍ତି', 'ନାସ୍ତି', 'ନାହିଁ', 'ନାହିଁ' । ଆର୍ଯ୍ୟ ମହର୍ଷିଗଣ ଅଜସ୍ର ବର୍ଷ ତ୍ୟାଗପୂତ ସାଧନା ଦ୍ୱାରା 'ବ୍ରହ୍ମ ସତ୍ୟ ଜଗତ୍ ମିଥ୍ୟା'କୁ ବୁଝିଥିଲେ । ଆସ୍ତିକ୍ୟ ବା ବ୍ରହ୍ମ (ପରମାତ୍ମା)ରେ ବିଶ୍ୱାସ ତଥା ସମଗ୍ର ସୃଷ୍ଟିକୁ ତାଙ୍କ ପ୍ରତିଚ୍ଛାୟା ମାନିବା ବୈଦିକ ସଭ୍ୟତା ଏବଂ ସଂସ୍କୃତିର ଆଧାରଭୂତ ମାନ୍ୟତା । ଆମ ସଂସ୍କୃତିର ପ୍ରାଣଦାୟିନୀ ଶକ୍ତି ହେଉଛି ପରଂବ୍ରହ୍ମ ବା ପରମେଶ୍ୱରଙ୍କ ପରମସତ୍ତା, ସର୍ବ ଶକ୍ତିମତ୍ତା କଥା ସର୍ବବ୍ୟାପକତାରେ ଅତୁଟ ଶ୍ରଦ୍ଧା । ହିନ୍ଦୁମାନଙ୍କର ଦୃଢ଼ ଆସ୍ଥା ରହିଛି ଯେ ସଂପୂର୍ଣ୍ଣ ସୃଷ୍ଟିର ବିବିଧତା ଅନ୍ତରାଳରେ, ବ୍ରହ୍ମାଣ୍ଡର ସମସ୍ତ ରହସ୍ୟ ଗର୍ଭରେ ଏକ ଅଦୃଶ୍ୟ, ଅଲୌକିକ ସତ୍ତା ବିଦ୍ୟମାନ, ଯେ ସୃଷ୍ଟିର ଉଦ୍‌ଭବ, ପାଳନ ଏବଂ ଯେ ପ୍ରଳୟର ହେତୁ । ଏହି ଦୃଶ୍ୟ ଜଗତ ପରମାତ୍ମାଙ୍କ ବ୍ୟକ୍ତ ରୂପ । ଈଶ୍ୱର ଏଥିରେ ସର୍ବତ୍ର ବିଦ୍ୟମାନ । ବ୍ରହ୍ମ ହିଁ ବିଶ୍ୱର ସ୍ରଷ୍ଟା ପାଳନ କର୍ତ୍ତା ତଥା ହର୍ତ୍ତା । ଯଥା- "ଯତୋ ବା ଇମାନି ଭୂତାନି ଜାୟନ୍ତେ ଯେନ ଜାନାତି ଜୀବନ୍ତି ।" (ତୈତ୍ତିରୀୟ- ଉ° ୩/୧) ଅର୍ଥାତ୍ ଏ ସମସ୍ତ ଭୂତପ୍ରାଣୀ ଯହିଁରୁ ଉତ୍ପନ୍ନ ହୁଅନ୍ତି, ଉତ୍ପନ୍ନ ହୋଇ ଯେଉଁ ସତ୍ତାରେ ଜୀବିତ ରହନ୍ତି ଏବଂ ବିନାଶ ସମୟରେ (ପ୍ରଳୟ କାଳ) ଯହିଁରେ ବିଲୀନ ହୋଇଯାଆନ୍ତି ତାହା ହେଉଛି ବ୍ରହ୍ମ । ଈଶ୍ୱରଙ୍କ ସର୍ବ ବ୍ୟାପକତା ବିଷୟରେ ଭଗବାନ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି- 'ମତଃ ପରତରଂ ନାନ୍ୟ କିଞ୍ଚି ଦସ୍ତି ଧନଞ୍ଜୟ ! ଅର୍ଥାତ୍- ହେ ଧନଞ୍ଜୟ ! ମୋ'ଠାରୁ ଭିନ୍ନ କେହି ମଧ୍ୟ ଅନ୍ୟ ପରମକାରଣ ନାହିଁ । ଏହି ସଂପୂର୍ଣ୍ଣ ଜଗତ ସୂତ୍ରରେ ମଣିଗଣ ସଦୃଶ ମୋ'ଠାରେ ଗୁନ୍ଥା ହୋଇଛି । (ଗୀତା ୭/୭)



# ୭୨. ଦ୍ୱୈତରେ ଅଦ୍ୱୈତ

ଭାରତୀୟ ଆର୍ଯ୍ୟପ୍ରଜ୍ଞା ସଦା ବିବିଧରେ ଏକତା ଅର୍ଥାତ୍ ଦ୍ୱୈତରେ ଅଦ୍ୱୈତର ସ୍ଥିତି ହୃଦୟଙ୍ଗମ କରିଅଛି । ବିଶ୍ୱରେ ବିବିଧ ରୂପତା ବା ନାନାତ୍ୱ ଦୃଷ୍ଟି ଗୋଚର ହୋଇଥାଏ, କିନ୍ତୁ ଏହି ବାହ୍ୟ ଅନେକତାରେ ଭାରତୀୟ ପରଂପରା ସଦୈବ ଏକତା ବା ଅଦ୍ୱୈତକୁ ସ୍ପଷ୍ଟତଃ ଦର୍ଶନ କରିଅଛି । ଏ ସୂତ୍ର ଯାହା ସମସ୍ତ ବିଷୟ ମଧ୍ୟରେ (ଅନ୍ତରରେ) ସମାବିଷ୍ଟ, ତାହା ହେଉଛି ଆତ୍ମତତ୍ତ୍ୱ ବା ଈଶ୍ୱରଙ୍କ ଅଂଶ, ଯାହା ସ୍ୱତଃ ଆନନ୍ଦ ସ୍ୱରୂପ, ନିର୍ଲିପ୍ତ ତଥା ଶାଶ୍ୱତ । ନାନା ମନୋବୃତ୍ତିସଂପନ୍ନ ସକଳ ପ୍ରାଣୀ ଯେ ଜୀବନ ପର୍ଯ୍ୟନ୍ତ ଅଖଣ୍ଡ ନିରତିଶୟ ଆନନ୍ଦର ସନ୍ଧାନରେ ରତ ରହିଥାଏ । ସେହି ଆତ୍ମତତ୍ତ୍ୱ, ଆତ୍ମ ଉପଲବ୍ଧି ହେତୁ ଅଭିଲାଷ ରଖିଥାଏ । ଅସୀମ ଆନନ୍ଦର ଏହି ପିପାସା ସମସ୍ତ ନାନାତ୍ୱକୁ ଏକତ୍ୱ ଦିଗରେ ପ୍ରେରିତ କରିଥାଏ । ଭାରତୀୟ ମନୀଷି ବୃନ୍ଦ ବିବିଧତାରେ ଏହି ଏକତ୍ୱକୁ ଦର୍ଶନ କରି ଅଛନ୍ତି । ଈଶୋପନିଷଦ୍‌ରେ ଋଷି ଉଦ୍‌ଘୋଷ କରିଛନ୍ତି– ଯସ୍ତୁ ସର୍ବାଣି ଭୂତାନ୍ୟାତ୍ମନେବାନୁ ପଶ୍ୟତି । ସର୍ବଭୂତେଷୁ ଚାତ୍ମାନଂ ତତୋନ ବିଜୁଗୁପ୍‌ସ୍ୟତେ । (ଈଶୋପନିଷଦ୍ /୬) ଅର୍ଥାତ୍ ଯେଉଁ ବ୍ୟକ୍ତି ପ୍ରାଣୀମାତ୍ରକୁ ସର୍ବାଧାର ପରଂବ୍ରହ୍ମ ପରମାତ୍ମାରେ ଦେଖିଥାଏ ଏବଂ ସର୍ବାନ୍ତର୍ଯାମୀ ପରମାତ୍ମାଙ୍କୁ ପ୍ରାଣୀ ମାତ୍ରରେ ଦେଖିଥାଏ, ସେ କାହାରିକୁ ଘୃଣା ବା ଦ୍ୱେଷ କିପରି ପରିପାରିବ ? ଭଗବାନ ଶ୍ରୀକୃଷ୍ଣ ଗୀତାରେ ସ୍ୱୟଂ କହିଛନ୍ତି– "ଈଶ୍ୱରଃ ସର୍ବଭୂତାନାଂ ହୃଦେଶେଽର୍ଜୁନ ତିଷ୍ଠତି" (ଗୀତା-୧୮/୬୧) ଅର୍ଥାତ୍ ସମସ୍ତ ପ୍ରାଣୀଙ୍କ ହୃଦୟରେ ଅନ୍ତର୍ଯାମୀ ପରମେଶ୍ୱର ସ୍ଥିତ ।

ତାତ୍‌ପର୍ଯ୍ୟ ହେଉଛି କି ଏକ ପରମାତ୍ମାଙ୍କ ସନ୍ତାନ ହେବା ହେତୁ ସମସ୍ତେ ଏକ ତତ୍ତ୍ୱରେ ଅନୁସ୍ୟୂତ । ନାମ ରୂପର ଭେଦ ହେଲେ ହେଁ ଆମ ସମସ୍ତଙ୍କଠାରେ ଚିନ୍ମୟ ଏକତ୍ୱ ବିଦ୍ୟମାନ । ଆମ ସଂସ୍କୃତି ଆମକୁ ବାହ୍ୟ ସାଂସାରିକ ଆବରଣ ପଛରେ ନିହିତ ଆତ୍ମତତ୍ତ୍ୱ ଅଥବା ଅଦ୍ୱୈତ ଦର୍ଶନ ଦିଗକୁ ଉନ୍ମୁଖ କରିଥାଏ । ସୃଷ୍ଟି ହେଉଛି ଏକ, ବିଶ୍ୱ ଏକ, ପରମାତ୍ମା ଏକ, ଜୀବାତ୍ମା ଯାହା ପରମାତ୍ମାଙ୍କ ଅଂଶ; ଏକ, ଏହି ଏକ ଭାବନାରେ ଆମ ସଂସ୍କୃତିକୁ ଅଦ୍ୱୈତବାଦୀ କହିବାର ଗୌରବ ପ୍ରଦାନ କରିଅଛି ।



# ୭୩. ଜନନୀଙ୍କ ଶ୍ରେଷ୍ଠ ଉପଦେଶ

ରାଣୀ ମଦାଳସା ପରମ ବିଦୁଷୀ ଥିଲେ । ସେ ଧର୍ମଶାସ୍ତ୍ରର ଗହନ ଅଧ୍ୟୟନ କରି ବାସ୍ତବ ଜ୍ଞାନ ପ୍ରାପ୍ତ କରିଥିଲେ । ସେ ଆତ୍ମା ପରମାତ୍ମାଙ୍କ ଏପରି ସରଳ ବ୍ୟାଖ୍ୟା କରୁଥିଲେ ଯେ ଋଷିଗଣ ତାଙ୍କ ପ୍ରତି ଶ୍ରଦ୍ଧାବନତ ହୋଇଉଠୁଥିଲେ । ପୁତ୍ରମାନଙ୍କୁ ବାଲ୍ୟାବସ୍ଥାରେ ଉପଦେଶ ଦେଇ କହିଲେ- "ମାନବ ଜୀବନ ବଡ଼ ଭାଗ୍ୟରୁ ମିଳିଥାଏ, ଏହାକୁ ସାଂସାରିକ ଭୋଗପ୍ରାପ୍ତ କରିବାର ପ୍ରୟାସରେ ନଷ୍ଟ କରିଦେବା ମୂର୍ଖତା । ମାନବକୁ ଭକ୍ତି ସାଧନା ଏବଂ ତପସ୍ୟାରେ ବିନିଯୋଗ କରି ଜୀବନ ସାର୍ଥକ କରିବା ଉଚିତ ।" ତାଙ୍କ ଉପଦେଶର ପ୍ରଭାବରେ ତାଙ୍କ କେତେକ ପୁତ୍ର ରାଜ୍ୟ ମୋହ ଛାଡ଼ି ବଣରେ ତପସ୍ୟା ସାଧନା କଲେ ।

ରାଜା ଦିନେ ରାଣୀଙ୍କୁ କହିଲେ- ତୁମେ ସବୁ ପୁତ୍ରଙ୍କୁ ଧର୍ମଶାସ୍ତ୍ର ଉପଦେଶ ଦେଇ ବଣକୁ ପଠାଇଦେଲ । ଏବେ ସାନପୁଅ ଅଳର୍କ କେବଳ ଅଛି । ଏହାକୁ ରାଜ୍ୟର ଉତ୍ତରାଧିକାରୀ ତିଆରି କରିବା ଜରୁରୀ । ତାକୁ ସେ ଉପଦେଶରୁ ଦୂରରେ ରଖ ! ତାକୁ ପିତା ଆଦର୍ଶ ଶାସକର ଶିକ୍ଷା ଦେଲେ ।

ମଦାଳସା ଏବଂ ରାଜା ବୃଦ୍ଧାବସ୍ଥାର ଅନୁଭୂତି ହେବାରୁ ଅଳର୍କଙ୍କୁ ରାଜସିଂହାସନ ସମର୍ପଣ କରି ବଣକୁ ବାହାରିଲେ । କୁମାର ଅଳର୍କ କହିଲେ- ମାତା, ତୁମେ ମହାନ୍ ବ୍ରହ୍ମନିଷ୍ଠ ତଥା ଜ୍ଞାନବାନ୍ । ମୋ'ର ସମସ୍ତ ଭାଇଙ୍କୁ ଉପଦେଶ ଦେଇ ତାଙ୍କ ଜୀବନକୁ ସଫଳ କରିଅଛନ୍ତି । ମୋତେ ମଧ୍ୟ କିଛି ଉପଦେଶ ଦିଅନ୍ତୁ ।

ମଦାଳସା ପୁତ୍ର ମୁଣ୍ଡ ଉପରେ ହାତ ରଖି କହିଲେ- ପୁତ୍ର ! ସଦାଚାର ଏବଂ ସାତ୍ତ୍ୱିକତା କେବେ ତ୍ୟାଗ କରିବୁନାହିଁ । ସମୟ ମିଳିଲେ ସତ୍‌ପୁରୁଷଙ୍କ ସତ୍‌ସଂଗରେ ତତ୍‌ପର ରହିବୁ । ପ୍ରଜାଙ୍କୁ ଦୁଃଖ, କଷ୍ଟ ହେଲା ଭଳି କାର୍ଯ୍ୟ କରିବୁ ନାହିଁ । ମୃତ୍ୟୁ ଏବଂ ଭଗବାନଙ୍କୁ ପ୍ରତ୍ୟେକଟି ସମୟରେ ସ୍ମରଣ ରଖିଥିବୁ । ତୁମ ଜୀବନ ସ୍ୱତଃ ସାର୍ଥକ ହୋଇଯିବ ।



# ୭୪. ଭାରତୀୟ ସଂସ୍କୃତିର ମହାନତା ସମତ୍ୱ

ବାସ୍ତବରେ ସମତ୍ୱ ବୁଦ୍ଧି ହିଁ ଆମ ଭିତରେ ସଭିଁଙ୍କ ପ୍ରତି ପ୍ରେମ, ବିଶ୍ୱବନ୍ଧୁତ୍ୱ ଏବଂ ବିଶ୍ୱଶାନ୍ତି ଭାବନାର ଉଦ୍ରେକ କରିଥାଏ । ତେବେ ତ ଆମ ସଂସ୍କୃତିର ଉଦ୍‌ଘୋଷଣା ଏବଂ କାମନା-

"ସର୍ବେ ଭବନ୍ତୁ ସୁଖୀନଃ ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମାକଶ୍ଚିଦ୍ ଦୁଃଖଭାଗ୍‌ଭବେତ୍ ॥"

ସମସ୍ତ ପ୍ରାଣୀଙ୍କୁ ଆତ୍ମବତ୍ ମାନୁଥିବା ଭାରତୀୟ ସଂସ୍କୃତି ଲୋକଙ୍କୁ ସଦୈବ ଏହି କାମନା ରହିଥାଏ, ଭଗବାନ୍‌ଙ୍କୁ ଏହି ପ୍ରାର୍ଥନା ରହିଥାଏ କି ସମସ୍ତେ ସୁଖୀ ହୁଅନ୍ତୁ, ସମସ୍ତେ ସୁସ୍ଥ ଏବଂ ନୀରୋଗ ରୁହନ୍ତୁ । କେବେ କାହା ଉପରେ ବିପତ୍ତି ନପଡୁ ଏବଂ ସମସ୍ତଙ୍କର ଆନ୍ତରିକ କଲ୍ୟାଣ ହେଉ । ସେ ସମସ୍ତଙ୍କର ଲୌକିକ ଏବଂ ପରଲୌକିକ ଉତ୍‌ଥାନ ତଥା ମନୋରଥ- ସିଦ୍ଧିର ଶୁଭେଚ୍ଛା ରଖିଥାଆନ୍ତି । ସଂସାର ଏକ ନୀଡ଼ ତୁଲ୍ୟ, ଏଥିରେ ନିବାସ କରୁଥିବା ସକଳ ପ୍ରାଣୀଙ୍କ ମଧ୍ୟରେ ପ୍ରେମ- ସଦ୍‌ଭାବ ଏବଂ ସୁଖ-ଶାନ୍ତି ବଜାୟ ରହୁ ଏହି ଇଚ୍ଛା ପ୍ରତ୍ୟେକ ଭାରତୀୟଙ୍କର ହୋଇଥାଏ । ଏହି ବିଚାର ଦୃଷ୍ଟିକୋଣରୁ ମନୀଷୀ "ବସୁଧୈବ କୁଟୁମ୍ବକମ୍"ର ସିଦ୍ଧାନ୍ତ ସ୍ଥାପନ କରି ବିଶ୍ୱକୁ ଏ ବାଣୀ ମେଲି ଦେଇଛନ୍ତି ।

ଆଦର୍ଶ ଧର୍ମାଚରଣ ମୂଳକ ଭାରତୀୟ ସଂସ୍କୃତି ନିର୍ବୈରତା, ସହିଷ୍ଣୁତା, ତ୍ୟାଗ ତଥା ବିଶ୍ୱବନ୍ଧୁତ୍ୱକୁ କେନ୍ଦ୍ରରେ ରଖି ସମନ୍ୱୟ ବାଦୀ ଦୃଷ୍ଟିକୋଣକୁ ପ୍ରୋତ୍ସାହନ ଦେଇଥାଏ । ଭାରତୀୟ ସଂସ୍କୃତି ସର୍ବୋଦୟ ବାଦୀ । ଏହା ସମସ୍ତଙ୍କୁ ସତ୍‌ରୁ ଚିତ୍ ଏବଂ ଚିତ୍‌ରୁ ଆନନ୍ଦ ଦିଗରେ ଉନ୍ମୁଖ କରିଥାଏ । ଚାରି ପୁରୁଷାର୍ଥର ପଥ ପ୍ରଶସ୍ତ କରାଇଥାଏ । ଆମ ସଂସ୍କୃତିରେ ବିଶ୍ୱାସ କରୁଥିବା ବ୍ୟକ୍ତି କହିଉଠେ-

ନତ୍ୱଂ କାମୟେ ରାଜ୍ୟଂ ନସ୍ୱର୍ଗଂ ନାପୁନର୍ଭବମ୍
କାମୟେ ଦୁଃଖ ତପ୍ତାନାଂ ପ୍ରାଣିନା ମାର୍ତ୍ତିନାଶନମ୍ ॥

ଅର୍ଥାତ୍ ମୋ'ର ରାଜ୍ୟର ଅଭିଳଷା ନାହିଁ, ସ୍ୱର୍ଗ କାମନା କରେ ନାହିଁ, ପୁନର୍ଜନ୍ମର କାମନା ନାହିଁ । ମୋ'ର ଉତ୍କଟ କାମନା ହେଉଛି- ମୁଁ ଦୁଃଖ ସନ୍ତପ୍ତ ପ୍ରାଣୀ ମାତ୍ରର ବିପତ୍ତିକୁ ନିବାରଣ କରିବାରେ ସମର୍ଥ ହେବି । ଅର୍ଥାତ୍ ତାଙ୍କୁ ସୁଖ ଶାନ୍ତି ଦେଇ ପାରିବ । କେତେ ଉଦାର ଆଦର୍ଶ ସତେ !!!



# ୬୫. ସାଂସାରିକ ଦୁଃଖ ଏବଂ ନିବୃତ୍ତି

ଶାସ୍ତ୍ରକାର- ତତ୍ତ୍ୱଜ୍ଞାନୀ କହିଛନ୍ତି କି, ଦୁଃଖର କାରଣ ସନ୍ଧାନ କରିପାରିଲେ କିଛି ସୀମା ପର୍ଯ୍ୟନ୍ତ ଦୁଃଖରୁ ନିବୃତ୍ତି ମିଳିଥାଏ । ଦୁଃଖର କିଛି ମୁଖ୍ୟକାରଣ ହେଉଛି ଦୋଷଯୁକ୍ତ କର୍ମ, ଜୀବାତ୍ମାର ମିଥ୍ୟାଜ୍ଞାନ ତଥା ଅଳ୍ପଜ୍ଞ ହେବା, ସମୁଚିତ ଜ୍ଞାନର ଅଭାବ, ଚିତ୍ତ ଚାଞ୍ଚଲ୍ୟ, ସକାମତା, ତୃଷ୍ଣା ମୋହ, ଲୋଭବୃତ୍ତି, କାମନା-ବାସନା, ତିନିପ୍ରକାର ଏଷଣା । (୧) ବିତ୍ତୈଷଣା, (୨) ପୁତ୍ରୈଷଣା, (୩) ଲୋକୈଷଣା । ଭୌତିକ ପଦାର୍ଥର ସଂଗ୍ରହ ତଥା ତାହାର ସୁଖ ଭୋଗର ଇଚ୍ଛା, ଭୋଗବୃତ୍ତି, ଅଶୁଭ ସଂକଳ୍ପ ଏବଂ କ୍ରୋଧ, ଅହଙ୍କାର ଅଧୈର୍ଯ୍ୟ ତଥା ନାସ୍ତିକତା, ଅବିଦ୍ୟା ଏବଂ ପୂର୍ବଜନ୍ମ- ଜନ୍ମାନ୍ତର ସଂଚିତକୁ ସଂସ୍କାର, ସମ୍ବନ୍ଧ ପ୍ରଭୃତି । ଏ ସମସ୍ତ ସାଂସାରିକ ପୁରୁଷକୁ ହିଁ ବ୍ୟାପ୍ତ କରିଥାଆନ୍ତି । ଯୋଗୀ ଏବଂ ତତ୍ତ୍ୱଜ୍ଞାନୀଙ୍କଠାରେ ଏହା ହୋଇନଥାଏ । ଏହା ବ୍ୟତୀତ ଜନ୍ମ- ମରଣ ଦୁଃଖ ସୁହୃଦ- ମୋହାତ୍ମକ ଦୁଃଖ, ପାପ ସ୍ମରଣାତ୍ମକ ଦୁଃଖ, ଭାବ ଚିନ୍ତାତ୍ମକ ଦୁଃଖାଦି ଏ ସମସ୍ତ ଜୀବାତ୍ମା ସହିତ ଅନ୍ତିମ ସମୟ ପର୍ଯ୍ୟନ୍ତ ରହିଥାଆନ୍ତି । ଦୁଃଖର ଅନ୍ତ ନାହିଁ । 'ଦୁଃଖ ଜନ୍ମ ପ୍ରବୃତ୍ତି ଦୋଷ ମିଥ୍ୟା ଜ୍ଞାନଂ" (ନ୍ୟାୟସୂତ୍ର ୧/୨) । ମନୁଷ୍ୟ ଜନ୍ମର ମୁଖ୍ୟ କାରଣ ହେଉଛି ତାହାର ପୂର୍ବ ସଂସ୍କାର ଏବଂ ଅବଶେଷ ସଂଚିତ କର୍ମ । ଅଜ୍ଞାନ କାରଣରୁ ମନରେ ଦୋଷ ଉତ୍ପନ୍ନ ହୁଏ, ଦୋଷ କାରଣରୁ ପ୍ରବୃତ୍ତି ଏବଂ ପ୍ରବୃତ୍ତି କାରଣରୁ ଜନ୍ମ ହୋଇଥାଏ । ସକଳ ଦୁଃଖର କାରଣ ହେଉଛି ଜନ୍ମ । ଯେ ଯାବତ୍ ଜୀବଠାରେ ଅଜ୍ଞାନତା ଦୂର ନ ହୋଇଛି, ସେ ଯାବତ୍ ଜନ୍ମ ମରଣ ଚକ୍ର ଚାଲୁରହେ । ଅଜ୍ଞାନତା ଅବିଦ୍ୟାର ଭ୍ରମ ଜାଣିଗଲା ପରେ ସମଗ୍ର ଦୁଃଖରୁ ମୁକ୍ତି ମିଳିଥାଏ । ଏହା ହିଁ ଧ୍ରୁବସତ୍ୟ ।



# ୬୬. ଈଶ୍ୱରଙ୍କ ଇଚ୍ଛାକୁ ପାଳନ କର

ସର୍ବଦା ଗ୍ରହଣ କରିବାକୁ ଆଗ୍ରହ ପୋଷଣ କର । ଜୀବନର ପ୍ରତ୍ୟକ ଘଟଣାକୁ ଈଶ୍ୱର ଇଚ୍ଛାଭାବେ ଗ୍ରହଣ କର । ହେ ପ୍ରଭୁ ! ତୁମ୍ଭ ଇଚ୍ଛା ପୂର୍ଣ୍ଣ ହେଉ । ଜୀବନର ପ୍ରତ୍ୟେକ ମୋଡ଼ ପ୍ରତିଟି ବିଚ୍ୟୁତି ବ୍ୟଞ୍ଜନାରେ ହିଁ ତୁମର କେବଳ ପ୍ରତିକ୍ରିୟା ହେଉଥାଉ । ଈଶ୍ୱର ହିଁ କେବଳ ତୁମର ବାସ୍ତବ ବନ୍ଧୁ । ସେ ତୁମର ସର୍ବୋଚ୍ଚ ହିତାକାଂକ୍ଷୀ । ସେ ତୁମକୁ ଭଲମନ୍ଦର ଅନୁଭୂତି ପ୍ରଦାନ କରି ନିହାଣ ଆକୃତିର କରିଅଛନ୍ତି, ଫଳରେ ତୁମେ ତାଙ୍କ କାର୍ଯ୍ୟର ସାଧନ ସ୍ୱରୂପ ଉପାଦାନଟିଏ ହୋଇଯାଅ । ସେହି ଦିବ୍ୟହସ୍ତର ଆକୃତିରେ ପରିଣତ ହୋଇଯିବାକୁ ନିଜକୁ ପ୍ରସ୍ତୁତ କରିରଖ ।

ବିରୋଧ କର ନାହିଁ, ନିଜକୁ ଈଶ୍ୱରଙ୍କ ଇଚ୍ଛାଭାବେ ସମର୍ପିତ ହୋଇଯାଅ । ମହାଜାଗତିକ ଘୂର୍ଣ୍ଣି ମଧ୍ୟରେ ନିଜକୁ ତୃଣ ବୋଲି ବିଚାର କର । ବ୍ୟକ୍ତିଗତ ଅହମିକା ରଖନାହିଁ । ଈଶ୍ୱରଙ୍କ ଇଚ୍ଛାର ପ୍ରୟୋଜନିୟତା ଉପଲବ୍ଧି କରି ପାରିଲେ ଏହା କେବଳ ସମ୍ଭବ ହେବ, ପୁନଃ ତୁମେ ଯେତେବେଳେ ମନୁଷ୍ୟର ସକଳ ପ୍ରାରମ୍ଭ ଓ ଉଦ୍ୟମକୁ ଈଶ୍ୱରଙ୍କ ସର୍ବୋତ୍ତମ ଇଚ୍ଛାଭାବେ ଅଧ୍ୟୟନ କରିବାକୁ ସମର୍ଥ ହେବ । ମନୁଷ୍ୟତା ଦୁର୍ବଳତା ନୁହେଁ- ସାମର୍ଥ୍ୟ । ଅଧିକ ମାନବିକତା ହେଉଛି ସମଧିକ ସାମର୍ଥ୍ୟର ସ୍ୱରୂପ । ଯେହେତୁ ତୁମେ ଈଶ୍ୱରୀୟ ଇଚ୍ଛାର ପ୍ରତିରୋଧ କରୁନାହିଁ, ତୁମ ଜୀବନ ନିର୍ବିଘ୍ନରେ ଅନୁସୃତ ହେବ । ତୁମର ପରାଜୟ ହେବନାହିଁ କାରଣ ତୁମେ ତୁମ ନିଜ ଇଚ୍ଛା ଓ ଉଦ୍ୟମରେ କିଛି କରୁନାହିଁ । ସୁତରାଂ ତୁମ ଜୀବନ ଏକ ମହାନ ସଫଳତାରେ ନିର୍ଣ୍ଣିତ ହେବ । ଈଶ୍ୱରଙ୍କ ପ୍ରଜ୍ଞା, ବିଭୂତି ଓ ସାମର୍ଥ୍ୟ ତୁମ ଶୂନ୍ୟ ପ୍ରାଣରେ ପ୍ରବିଷ୍ଟ ହୋଇ ତୁମ ଅହଂକୁ ବିଲୟ କରିଦେବ ଏବଂ ସେହିପରି ପୂର୍ଣ୍ଣ କରିଦେବ, ଯେପରି ବାୟୁ ଶୂନ୍ୟ ସ୍ଥାନକୁ ପ୍ରବେଶ କରି ପୂର୍ଣ୍ଣ କରିଦିଏ । ଏହା ହେଉଛି ଜାଗତିକ, ଅନୁଭବ୍ୟ ନିୟମ ।



# ୬୭. ଦୁଃଖ ନିବାରଣରେ ଶାସ୍ତ୍ର ଉକ୍ତି

ଶାସ୍ତ୍ରରେ ବିବିଧ ପ୍ରକାର ଦୁଃଖର ଉଲ୍ଲେଖ ରହିଛି । ଯୋଗଦର୍ଶନର ବ୍ୟାସ ଭାଷ୍ୟରେ ତିନି ପ୍ରକାର ଦୁଃଖ ନିର୍ଦ୍ଦେଶିତ ହୋଇଛି- ଆଧ୍ୟାତ୍ମିକ, ଆଧିଭୌତିକ ତଥା ଆଧିଦୈବୀକ ।

ଆଧ୍ୟାତ୍ମିକ ଦୁଃଖ ସେହି ଦୁଃଖ ଯହିଁରେ ବ୍ୟକ୍ତି ସ୍ୱୟଂ କାରଣ ହୋଇଥାଏ । ଅବିଦ୍ୟା, ରାଗଦ୍ୱେଷ, ମୂର୍ଖତା କାରଣରୁ ମନରେ କ୍ଳେଶ ହୋଇଥାଏ । ଏହିପରି ଜ୍ୱରାଦି ରୋଗରେ ଶାରୀରିକ କଷ୍ଟ ହେବା, ଅନୁଚିତ ଆହାର ବିହାର ନ୍ୟୂନାଧିକ ନିଦ୍ରାରେ ଯେଉଁ କଷ୍ଟ ହୋଇଥାଏ, ତାହାକୁ ଆଧ୍ୟାତ୍ମିକ ଦୁଃଖ କୁହାଯାଏ । ଏହିପରି ଆଧିଦୈବୀକ ଦୁଃଖ ସେହି ଦୁଃଖ ଯାହା ଅତିବୃଷ୍ଟି, ଅତିଶୀତ, ଅତିଗରମ, ବନ୍ୟା, ଭୂମିକମ୍ପ ତଥା ଖଗୋଳୀୟ ପ୍ରଭାବ ହେତୁ ହୋଇଥାଏ । ଏଥିରେ କୌଣସି ବ୍ୟକ୍ତିର ସାମାନ୍ୟ କାରଣ ମଧ ନଥାଏ, ବାହ୍ୟ ପ୍ରଭାବ କାରଣରୁ ମନ ଇନ୍ଦ୍ରିୟ ଅଶାନ୍ତି ମଧ ଆଧିଦୈବୀକ ଅନ୍ତର୍ଗତ । ସେହିପରି ଆଧିଭୌତିକ ଦୁଃଖ ତାହା ଯାହା ଅନ୍ୟ ପ୍ରାଣୀଙ୍କ କାରଣରୁ ପ୍ରାପ୍ତ ହୁଏ । ଶତ୍ରୁ, ଦୁଷ୍ଟ, ଚୋର, ହିଂସକ ପ୍ରାଣୀ ବାଘ, ଭାଲୁ, ସର୍ପ, ବିଛା ଆଦି ଦ୍ୱାରା ଯେଉଁ ଦୁଃଖ ପ୍ରାପ୍ତି ହୋଇଥାଏ । ତାହା ଆଧିଭୌତିକ ଦୁଃଖ ।

ମହର୍ଷି କପିଳ ଦୁଃଖ ନିବାରଣ ସଂପର୍କରେ କହିଛନ୍ତି- "ଅଥ ତ୍ରିବିଧ ଦୁଃଖାତ୍ୟନ୍ତ ନିବୃତ୍ତି ରତ୍ୟନ୍ତ ପୁରୁଷାର୍ଥ" (ସାଂଖ୍ୟ ସୂତ୍ର ୧/୧) । ତ୍ରିବିଧ ଦୁଃଖର ଅତ୍ୟନ୍ତ ପୂର୍ଣ୍ଣ ନିବୃତ୍ତି ଅତ୍ୟନ୍ତ ପୁରୁଷାର୍ଥ କରିପାରେ । କାରଣ "ବିବେକାନ୍ତିଃ ଶେଷଦୁଃଖ ନିବୃତ୍ତୌ କୃତ କୃତ୍ୟୋ ନେତ ନାନ୍ୟେତରାତ୍" (ସାଂଖ୍ୟ- ୩/୮୪) । ବିବେକ ଦ୍ୱାରା ସମସ୍ତ ଦୁଃଖ ଦୂର ହେବା ପରେ ପୁରୁଷ କୃତକୃତ୍ୟ ହୋଇଥାଏ, ଅନ୍ୟ କୌଣସି ପ୍ରକାରେ ନୁହେଁ । ବେଦରେ ଦୁଃଖ ନିବୃତ୍ତି ପାଇଁ କୁହାଯାଇଛି- 'ତମେବ ବିଦିତ୍ୱାତି ମୃତ୍ୟୁମେତି ନାନ୍ୟପନ୍ଥା ବିଦ୍ୟତେଽୟନାୟ' (ଯଜୁର୍ବେଦ- ୩୧/୧୮) । ମୃତ୍ୟୁ ଆଦି ଦୁଃଖରୁ ମୁକ୍ତି ପାଇବାର ଉପାୟ ଈଶ୍ୱର ପ୍ରାପ୍ତି ବ୍ୟତୀତ ଆଉ କିଛିନାହିଁ । ଅର୍ଥାତ୍ ଈଶ୍ୱରଙ୍କ ଶରଣ, ଆଶ୍ରୟରେ ରହି ଦୁଃଖ ନିବୃତ୍ତି ହେତୁ ଚିତ୍ତ ଏକାଗ୍ର କରି ଆତ୍ମା-ପରମାତ୍ମାରେ ଧ୍ୟାନ, ସମାଧି ଦ୍ୱାରା ସଂଯୁକ୍ତ କରି ତଥା ଅନ୍ତର ଭାବରେ ଈଶ୍ୱରଙ୍କୁ ଆପଣାର ଦୁଃଖ କଷ୍ଟ ଆଦିର ନିବାରଣ ହେତୁ ପ୍ରାର୍ଥନା କରିବା ଏକମାତ୍ର ବିକଳ୍ପ ।



# ୬୮. ଚିତ୍ତ ସଂଯମ

ଚିତ୍ତ ବିଷୟରେ ଶାସ୍ତ୍ର କଥନ ହେଲା ଚିତ୍ତ ବା ମନ ପ୍ରାଣବାୟୁ ଦ୍ୱାରା ବନ୍ଧା ହୋଇଛି ଏବଂ ନାନା ପ୍ରକାର ବିଚାର କାରଣରୁ ଚିତ୍ତ (ମନ) ବଶରେ ଆସିନଥାଏ । ଅତଃ ମନକୁ ବଶ କରିବାକୁ ପ୍ରାଣ- ଜୟ କରିବା ପ୍ରୟୋଜନ । ବାସ୍ତବରେ ପ୍ରାଣ ସ୍ପନ୍ଦନ (ପ୍ରାଣଗତି) ହିଁ ଚିତ୍ତ । ପ୍ରାଣ ସ୍ପନ୍ଦନ ରୋକାଗଲେ ଚିତ୍ତ ରୋକି ହେବ । ତାତ୍ପର୍ଯ୍ୟ ହେଉଛି ଚିତ୍ତ ପ୍ରାଣଗତିର ସମାନ ଚଳନ ହୋଇଥାଏ । ପ୍ରାଣଗତିକୁ ଉଣା କରାଗଲେ, ତହିଁରେ ନିୟନ୍ତ୍ରଣ କରାଗଲେ ଚିତ୍ତ ନିଶ୍ଚଳ ହୋଇଥାଏ । ଚିତ୍ତର ପରିସ୍ପନ୍ଦନ (ପ୍ରାଣର ଗତି) ପ୍ରାଣସ୍ପନ୍ଦନ (ପ୍ରାଣ-ଗତି)ର ଅଧୀନ । ପ୍ରାଣ ନିରୋଧ ହେବାପରେ ମନ ଅବଶ୍ୟ (ଉପଶାନ୍ତ) ନିରୁଦ୍ଧ ହୋଇଥାଏ । ପ୍ରାଣ ଓ ମନର ନିରୋଧ କେବଳ ପ୍ରାଣାୟମ ଓ ଧ୍ୟାନ ଦ୍ୱାରା ସମ୍ଭବ ।

ଅଷ୍ଟାଙ୍ଗ ଯୋଗର ସପ୍ତମ ସୋପାନ 'ଧ୍ୟାନ' । ଏହା ଈଶ୍ୱରଙ୍କ ସହ ସଂଯୁକ୍ତ କରିବା ତଥା ତାଙ୍କ ସହ ସାକ୍ଷାତ୍କାର କରିବାର ସର୍ବଶ୍ରେଷ୍ଠ ସାଧନ । ଧ୍ୟାନ ସଂପର୍କରେ ଜଣେ ଯୋଗୀ କହିଛନ୍ତି- ଧ୍ୟାନର ପୂର୍ଣ୍ଣ ଅର୍ଥ ହେଉଛି ମନର- ମନନ ରହିତ, ଚିନ୍ତନ ରହିତ, ସ୍ମୃତି ରହିତ ହେବା, ମନର ଅମନ ହେବା । ଏହା ଉଚ୍ଚ ଧ୍ୟାନର ସ୍ୱରୂପ । ଧ୍ୟାନରେ ମନକୁ ମନ ରହିତ ହୋଇ ଆତ୍ମାକାର ହୋଇ ରହିବା ଧ୍ୟାନର ଉଚ୍ଚ ଅବସ୍ଥା । 'ଧ୍ୟାନେନାତ୍ମନି ପଶ୍ୟନ୍ତି କେଚିଦାତ୍ମାନମାତ୍ମନା' (ଗୀତା-୧୩/୨୪) । ଧ୍ୟାନରେ ଆତ୍ମଦର୍ଶନ ଅନୁଭୂତି ହୋଇଥାଏ । ଧ୍ୟାନ ହିଁ ଚିତ୍ତଚାଞ୍ଚଲ୍ୟ ଉପରେ ବିଜୟ ପ୍ରାପ୍ତ କରିବାର ଅମୋଘ ଉପାୟ । ଧ୍ୟାନ ହିଁ ଈଶ୍ୱରଙ୍କ ଶକ୍ତି ଆକର୍ଷଣକାରୀ ଚୁମ୍ବକ ତଥା ଇଚ୍ଛିତ ଫଳଦାୟୀ କଳ୍ପବୃକ୍ଷ । ଧ୍ୟାନର ମୁଖ୍ୟ ଉଦ୍ଦେଶ୍ୟ ନିଜ ସ୍ୱରୂପକୁ ଜାଣିବା, ନିଜକୁ ଜାଣିନେବା ।



# ୬୯. ସ୍ୱାଧ୍ୟାୟ

ବେଦ, ଉପନିଷଦ, ଭଗବତ୍ ଗୀତା, ଯୋଗଦର୍ଶନ, ରାମାୟଣ, ମହାଭାରତ, ଯୋଗବାଶିଷ୍ଠ, ଅଷ୍ଟାବକ୍ରଗୀତା ଆଦି ସଦ୍‌ଗ୍ରନ୍ଥ ପଢ଼ିବା- ପଢ଼ାଇବା, ଶୁଣିବା, ଶୁଣାଇବା, ତହିଁରୁ ଲବ୍‌ଧ ଜ୍ଞାନ, ଉପଦେଶ ଦିବ୍ୟ ଗୁଣକୁ ଆଚରଣରେ ଆପଣେଇ ବ୍ୟବହାର କରି ଜୀବନ ଯାତ୍ରା ସମାହିତ କରିବା ହେଉଛି 'ସ୍ୱାଧ୍ୟାୟ'

ଶାର୍ଙ୍ଗଧର ସଂହିତାରେ ମନୁଷ୍ୟ ପାଇଁ ଏହା କୁହାଯାଇଛି-

ପ୍ରତ୍ୟହଂ ପ୍ରତ୍ୟବେକ୍ଷେତ ନରଶ୍ଚରିତ ମାତ୍ମନଃ
କିନ୍ନୁମେ ପଶୁଭିତୁଲ୍ୟଂ କିନ୍ନୁ ସତ୍‌ପୁରୁଷୈରିତି ॥

ବ୍ୟକ୍ତି ନିଜର ଜୀବନ ଚରିତ୍ରକୁ ପ୍ରତିଦିନ ରକ୍ଷାକରୁ । କ'ଣ ଆମର ଜୀବନ ପଶୁତୁଲ୍ୟ ହୋଇଯାଉଛି କି ଅଥବା ସତ୍‌ପୁରୁଷ ତୁଲ୍ୟ ଉଦାର ହୋଇ ଯାଉଛି ?

ସ୍ୱାଧ୍ୟାୟ ସଂପର୍କରେ ତୈତ୍ତରୀୟୋପନିଷଦରେ କୁହାଯାଇଛି- 'ସ୍ୱାଧ୍ୟାୟାନ୍ମା ପ୍ରମଦଃ' ସ୍ୱାଧ୍ୟାୟରେ ପ୍ରମଦ ନକର । ଏହା ବେଦର ଆଦେଶ, ବେଦର ରହସ୍ୟ ଏବଂ ବେଦର ଆଜ୍ଞା । ଏହାକୁ ଉତ୍ତମ ରୂପେ ପାଳନ କରିବା ଉଚିତ । ଏ ସମ୍ବନ୍ଧରେ ପତଞ୍ଜଳିଙ୍କ ଉକ୍ତି ଦେଖନ୍ତୁ- 'ସ୍ୱାଧ୍ୟାୟାବିଷ୍ଟ ଦେବତା ସମ୍ପ୍ରୟୋଗଃ' ଅର୍ଥାତ୍ ସ୍ୱାଧ୍ୟାୟରେ ଇଷ୍ଟ ଦେବତାଙ୍କ ସାକ୍ଷାତ୍ ହୋଇଥାଏ ।

ସ୍ୱାଧ୍ୟାୟ କରିବା ଦ୍ୱାରା ମନ ଏକାଗ୍ର ସ୍ଥିର ହୋଇଥାଏ, ବୁଦ୍ଧି ସ୍ଥିର ହୋଇଥାଏ । ସ୍ମୃତି ଦୃଢ଼ ହୋଇଥାଏ । ଜ୍ଞାନର ବୃଦ୍ଧି ଯଶ କୀର୍ତ୍ତି ପ୍ରାପ୍ତି ହୁଏ । କୁସଂସ୍କାର, ଦୋଷ, ମଳିନ ବିଚାର, କୁସଂଗ, ଦୁଷ୍କର୍ମ, ଦୁର୍ବ୍ୟସନ, ଅବଗୁଣର ଦୂର ହୋଇ ସଦ୍‌ଗୁଣ, ସଦ୍ ବିଚାର, ସଦ୍‌ଜ୍ଞାନର ପ୍ରାପ୍ତି ହୋଇଥାଏ । ମନୁଷ୍ୟ ଶୁଭକର୍ମରେ ପ୍ରବୃତ୍ତ ହୋଇ ନିଜ ଆଚରଣ ବ୍ୟବହାରରେ ପରିବର୍ତ୍ତନ ଏବଂ ସୁଧାର ଆଣିଥାଏ । ନିଜ ଜୀବନକୁ ସୁଖୀ, ଶାନ୍ତ କରିଥାଏ ।



# ୭୦. ପ୍ରେମ ଓ ପ୍ରୟୋଜନ

ସମ୍ବନ୍ଧ ଦୁଇ ପ୍ରକାର ହୋଇଥାଏ- ଗୋଟିଏ ପ୍ରେମମୂଳକ ଏବଂ ଦ୍ୱିତୀୟ ପ୍ରୟୋଜନ ମୂଳକ । ପ୍ରେମରେ ଭଗବାନଙ୍କ ସମ୍ବନ୍ଧ ହୋଇଥାଏ ଏବଂ ପ୍ରୟୋଜନ ସଂସାରର ସମ୍ବନ୍ଧ କରିଥାଏ । ଏହା ଅକ୍ଷରଶଃ ସତ୍ୟ ଯେ ଭଗବାନଙ୍କଠାରେ ପ୍ରେମମୂଳକ ସମ୍ବନ୍ଧ ହୋଇଥାଏ ଏବଂ ସଂସାରରେ ପ୍ରୟେଜନମୂଳକ ସମ୍ବନ୍ଧ । ଭଗବାନ ପ୍ରେମରେ ମିଳିଥାଆନ୍ତି ଏବଂ ସଂସାର ପ୍ରୟୋଜନରେ ମିଳିଥାଏ । କୌଣସି ଜୀବ, ପ୍ରାଣୀ ବା ବ୍ୟକ୍ତି ପାଖରେ ଭୌତିକ ବିଭବ ବା ସଂପଦ ହେଉ ବା ନହେଉ, କେବଳ ଭଗବାନଙ୍କ ପ୍ରତି ପ୍ରେମଭାବ ଅନ୍ତକରଣରେ ହୋଇଗଲେ ତେବେ ଭଗବାନଙ୍କଠାରେ ପ୍ରେମମୂଳକ ସମ୍ବନ୍ଧ ସ୍ଥାପିତ ହୋଇଯାଏ । ସଂସାରରେ ଏହା ଦେଖାଯାଏ ଯେ ଭଗବତ୍ ପ୍ରେମୀକୁ କେହି କୌଣସି ପ୍ରକାର ମହତ୍ତ୍ୱ ଦିଏ ନାହିଁ । କାହା ପାଖରେ ଭୌତିକ ଐଶ୍ୱର୍ଯ୍ୟ ନାହିଁ, ସାଂସାରିକ ଲୋକଙ୍କ ତା'ଠାରେ କିଛି ଯା- ଆସ ନାହିଁ । ଯାହା ପାଖରେ ଭୌତିକ ସଂପଦ, ବୈଭବ, ପଦ, ପ୍ରତିଷ୍ଠା ଏବଂ ଅଧିକାର (କ୍ଷମତା) ରହିଛି, ସାଂସାରିକ ଲୋକଙ୍କର ପ୍ରାୟ ତା'ଠାରେ ହିଁ ଦେବା-ନେବା ରହିଥାଏ । କାରଣ ତା'ଦ୍ୱାରା ସେମାନଙ୍କର ପ୍ରୟୋଜନସିଦ୍ଧ ହୋଇଥାଏ, ଉଦ୍ଦେଶ୍ୟ ଚରିତାର୍ଥ ହୋଇଥାଏ । ଏଣୁ ସଂସାରରେ ସମସ୍ତେ ଆଦର ଓ ସମ୍ମାନ ପ୍ରାପ୍ତ କରି ପାରନ୍ତି ନାହିଁ । ଅପର ପକ୍ଷେ ଭଗବାନଙ୍କୁ ପ୍ରତ୍ୟେକ ନିଜର ଅନ୍ତଃକରଣରେ ପ୍ରେମ ଭାବକୁ ସୃଷ୍ଟିକରି ଆଦର ଓ ପ୍ରେମ ପାଇ ପାରିଥାଏ । ରାମ ଚରିତ ମାନସରେ ଗୋସ୍ୱାମୀ ତୁଳସୀ ଦାସ କହିଛନ୍ତି-

ହରି ବ୍ୟାପକ ସର୍ବତ୍ର ସମାନା । ପ୍ରେମ ତେ ପ୍ରକଟ ହୋ ହିଂ ମୈଂ ଜାନା ।

(ରା.ଚ.ମା. ୧/୧୮୫/୫)



# ୭୧. ମହାଭାରତ ମହିମା

ଭାରତୀୟ ବାଙ୍‌ମୟରେ ମହାଭାରତର ସ୍ଥାନ ବହୁ ଉଚ୍ଚରେ । ଏହାକୁ ପଞ୍ଚମବେଦ କୁହାଯାଏ । ବିଦ୍ୱାନଙ୍କ ମଧ୍ୟରେ ଏହାର ବେଦତୁଲ୍ୟ ଆଦର । ଏଥିରେ ଧର୍ମ- ଅର୍ଥ- କାମ ମୋକ୍ଷ ଚାରି ପୁରୁଷାର୍ଥର ନିରୂପଣ କରାଯାଇଛି । ଧର୍ମର ସମସ୍ତ ଅଂଶର ବର୍ଣ୍ଣନା ହୋଇଛି । ବର୍ଣ୍ଣାଶ୍ରମ, ରାଜଧର୍ମ, ଆପଦ୍‌ଧର୍ମ, ଦାନଧର୍ମ, ଶ୍ରାଦ୍ଧଧର୍ମ, ସ୍ତ୍ରୀଧର୍ମ, ମୋକ୍ଷଧର୍ମ ଆଦି ବିବିଧ ଧର୍ମ ଶାନ୍ତିପର୍ବ ଏବଂ ଅନୁଶାସନ ପର୍ବରେ ଭୀଷ୍ମଙ୍କ ଦ୍ୱାରା ବିଶଦ ଭାବେ ବର୍ଣ୍ଣିତ । ଭଗବତ୍ ଗୀତା ଯେପରି ଅନୁପମ ଗ୍ରନ୍ଥ, ଯାହାକୁ ସାରା ସଂସାର ଆଦର ଦୃଷ୍ଟିରେ ଦେଖିଥାଏ, ଯାହାକୁ ଆମେ ବିଶ୍ୱ ସାହିତ୍ୟର ସର୍ବୋତ୍ତମ ଗ୍ରନ୍ଥ କହିଲେ ଅତ୍ୟୁକ୍ତି ହେବନାହିଁ, ତାହା ମହାଭାରତର ଭୀଷ୍ମପର୍ବ ଅନ୍ତର୍ଗତ । ଜ୍ଞାନ- କର୍ମ- ଭକ୍ତିର ଅପୂର୍ବ ସମନ୍ୱୟ ଅନ୍ୟ କୁତ୍ରାପି ଦେଖିବାକୁ ମିଳେ ନାହିଁ ।

ମହାଭାରତ ସମ୍ବନ୍ଧରେ ସ୍ୱୟଂ ବ୍ୟାସଦେବ କହିଛନ୍ତି- ଅଷ୍ଟାଦଶ ପୁରାଣ, ସମଗ୍ର ଧର୍ମଶାସ୍ତ୍ର, ବ୍ୟାକରଣ, ଜ୍ୟୋତିଷ, ଛନ୍ଦଶାସ୍ତ୍ର, ଶିକ୍ଷା କଳ୍ପ ଏବଂ ନିରୁକ୍ତ- ଏହି ଛ'ଅଂଶ ସହିତ ଚାରିବେଦ ଏସବୁକୁ ମିଶାଇ ଗୋଟିଏ ଦିଗରେ ଏବଂ ଅନ୍ୟ ଦିଗରେ କେବଳ ମହାଭାରତ ଅର୍ଥାତ୍ ବେଦ ବେଦାଙ୍ଗ, ପୁରାଣ ଏବଂ ଧର୍ମଶାସ୍ତ୍ରର ଅଧ୍ୟୟନରେ ଯେଉଁ ଜ୍ଞାନ ପ୍ରାପ୍ତ ହୋଇଥାଏ, କେବଳ ମହାଭାରତ ଅଧ୍ୟୟନରେ ତାହା ପ୍ରାପ୍ତ ହୁଏ । ମହାଭାରତ ଗ୍ରନ୍ଥ ଉପଦେଶ ରତ୍ନର ଖଣି । ଯେ ଏକାଗ୍ର ଚିତ୍ତରେ ମହାଭାରତ ଅଧ୍ୟୟନ କରିବ, ସେ ମୋକ୍ଷ ରୂପକ ପରମ ସିଦ୍ଧି ପାଇଥାଏ । ଯେଉଁ ବ୍ୟକ୍ତି ବେଦଜ୍ଞ ଏବଂ ଅନେକ ଶାସ୍ତ୍ରଜ୍ଞାତା ବ୍ରାହ୍ମଣକୁ ସୁବର୍ଣ୍ଣ ଶୃଙ୍ଗ ମଣ୍ଡିତ ଶତ ଧେନୁ ଦାନ କରେ ତାହାର ଏବଂ ଯେ ନିତ୍ୟ ମହାଭାରତର ପୁଣ୍ୟମୟୀ କଥା ଶ୍ରବଣ କରିଥାଏ, ଉଭୟଙ୍କର ଫଳ ସମାନ ହୋଇଥାଏ । (ମହାଭାରତ ସ୍ୱର୍ଗ / ୫/୪୬,୬୫,୬୬,୬୮)



# ୭୨. ସାମ୍ପ୍ରତିକ ସମାଜର ସମସ୍ୟା- ଉପଭୋଗ

ଆଜି ସମାଜରେ ଯେଉଁ ବିସଂଗତି ଦେଖାଯାଉଛି, ଏହାର ମୂଳରେ ଉପଭୋଗ- ପ୍ରଧାନ ଦୃଷ୍ଟିର ପ୍ରମୁଖ ଭୂମିକା ରହିଛି । ଅନ୍ୟପକ୍ଷରେ ଉପଯୋଗ- ଦର୍ଶନ ସମତାମୂଳକ ଦର୍ଶନର ଜନ୍ମଦାତା ।

ବିଳାସ ପ୍ରିୟ ଜୀବନ ରୋଗକୁ ନିମନ୍ତ୍ରଣ କରିଥାଏ । ଭୋଜନରେ ଅଧିକତା, ଅନିୟମିତତା ଏବଂ ଅନାବଶ୍ୟକ ଖାଇବା ପ୍ରବୃତ୍ତି ରୋଗ ଓ ଶୋକ ସୃଷ୍ଟି କରିଥାଏ । ଶାରୀରିକ ଶ୍ରମର ଅଭାବରେ କରାଯାଇଥିବା ଗରିଷ୍ଠ ଭୋଜନ ଠିକ୍ ଭାବେ ହଜମ ହୁଏ ନାହିଁ ଏବଂ ପରିଣାମରେ ବ୍ୟାଧି ସୃଷ୍ଟି କରିଥାଏ ଅଥବା ଜୀର୍ଣ୍ଣ ହେବାପରେ ଶରୀରରେ ଆବଶ୍ୟକତାଠାରୁ ଅଧିକ ସ୍ଥୁଳତା ବଢ଼ାଇଥାଏ । ଫଳତଃ ଆମ କାର୍ଯ୍ୟକ୍ଷମତା ଏବଂ ସୌଷ୍ଠବକୁ ପ୍ରଭାବିତ କରିଥାଏ । ଆଜି ବ୍ୟକ୍ତି ଭୋଜନ ଅଭାବରୁ ନୁହେଁ, ଅଧିକ ଭୋଜନ କାରଣରୁ ବ୍ୟାଧିଗ୍ରସ୍ତ ହୋଇ ଯନ୍ତ୍ରଣା, ଶୋକ, ଅର୍ଥନାଶ, ମନସ୍ତାପ ଗ୍ରସ୍ତ ହୋଇ ମୃତ୍ୟୁ ମୁଖରେ ପଡୁଛନ୍ତି । କରୋନା ମହାମାରିରେ ପ୍ରାୟତଃ ଅଧିକ ବିଳାସୀଙ୍କ ମୃତ୍ୟୁ ଏହାର ଜ୍ୱଳନ୍ତ ପ୍ରମାଣ । ଶରୀର ଆବଶ୍ୟକତା ଅନୁସାରେ ଭୋଜନ କରିବା ଉପଯୋଗବାଦୀ ଦର୍ଶନକୁ ପ୍ରକଟ କରିଥାଏ ଏବଂ ଅନାବଶ୍ୟକ ଭୋଜନ ଶରୀରକୁ ଅସୁନ୍ଦର, ଆଳସ୍ୟପରାୟଣ ତଥା ରୋଗୀ କରିଥାଏ, ଏହା ଉପଭୋଗବାଦୀ ଦୃଷ୍ଟିର ପରିଚାୟକ । ଏଣୁ ଏହା ଧ୍ୟାନଦେବା ଜରୁରୀ କି ଆମକୁ ପ୍ରାପ୍ତ ବସ୍ତୁ, ପରିସ୍ଥିତି ଏବଂ ସମୟର ସଦା ସଦୁପଯୋଗ କରିବା ଏବଂ ଦୁରୁପଯୋଗ କେବେ କରିବା ନାହିଁ । ଆମ ସନାତନ ସଂସ୍କୃତିର ଆମ ପ୍ରତି ସନ୍ଦେଶ କି ଆମେ ଅନ୍ୟ କାହାରି ଧନକୁ ନ୍ୟୁନତମ ଇଚ୍ଛା ମଧ କରିବା ନାହିଁ । ତ୍ୟାଗ ପୂର୍ବକ ଆସକ୍ତି ବିନା ଉପଭୋଗ କରିବା- 'ତେନ ତ୍ୟକ୍ତେନ ଭୁଞ୍ଜିଥା ମାଗୃଧଃ କସ୍ୟ ସ୍ୱିଦ୍‌ଧନମ୍' (ଈଶାବାସ୍ୟୋପନିଷଦ- ୧) ।



# ୭୩. ଯୋଗସୂତ୍ର ଆଧାରରେ ମନର ଚାରି ଭାବନା

ମହର୍ଷି ପତଞ୍ଜଳି 'ଯୋଗସୂତ୍ର'ରେ ଚାରି ପ୍ରକାର ଭାବନା ମନରେ ରଖିବା ଦ୍ୱାରା କଲ୍ୟାଣ ହେବା ମାନିଛନ୍ତି । ପ୍ରଥମେ 'ମୈତ୍ରୀ ଭାବନା' ଅର୍ଥାତ୍ ପ୍ରାଣୀମାତ୍ରଙ୍କେ ହିତ ଭାବନା ରଖିବା । ମୈତ୍ରୀ ଭାବନାର ବ୍ୟକ୍ତି କାହାରିଠାରେ ବୈର ଭାବ ରଖେନାହିଁ; ଯାହାର ପରିଣାମ ସ୍ୱରୂପ ସେ ନିଜକୁ ଈର୍ଷ୍ୟା, ଦ୍ୱେଷ ଏବଂ ଶତ୍ରୁତା ଆଦି କୁବିଚାରରୁ ରକ୍ଷା କରିଥାଏ; କାରଣ ଯେ କାହାରିଠାରେ ଦ୍ୱେଷ ଭାବ ରଖେ ବଦଳରେ ଶତ୍ରୁତା ହିଁ ମିଳିବ ଏବଂ କଟୁତାରେ କଟୁତା ବଢ଼ିବ । ଦ୍ୱିତୀୟ ହେଉଛି 'କଲ୍ୟାଣଭାବ', ଅର୍ଥାତ୍ ଦୁଃଖୀ ପ୍ରାଣୀ ପ୍ରତି ହାର୍ଦ୍ଦିକ ସହାନୁଭୂତି ରଖିବା ଏବଂ ଯଥାଶକ୍ତି ସହାୟତା କରିବା । ତୃତୀୟ ହେଉଛି 'ମୁଦିତାଭାବ', ଅର୍ଥାତ୍ ନିଜଠାରୁ ଶ୍ରେଷ୍ଠ ଏବଂ ପ୍ରତିଷ୍ଠିତ ବ୍ୟକ୍ତିଙ୍କ ସଂପର୍କରେ ରହି ପ୍ରସନ୍ନ ରହିବା । ଯଦି ଆମେ ଏପରି ବ୍ୟକ୍ତିଙ୍କ ସଂପର୍କରେ ରହିବା ତେବେ ତାଙ୍କ ପ୍ରତି ଈର୍ଷ୍ୟା, ଜ୍ୱଳନ ଆଦି ଭାବନା ବରାବର ନ ରହିବା । ଚତୁର୍ଥ ହେଉଛି 'ଉପେକ୍ଷା ଭାବ' ଅର୍ଥାତ୍ ପ୍ରତିକୂଳ ମନ ଏବଂ ବିଚାର ରଖୁଥିବାଙ୍କ ଠାରୁ ତଥା ପାପୀ ଏବଂ ଉଦ୍ଧତ ଲୋକଙ୍କଠାରୁ ଦୂର- ତଟସ୍ଥ ରହିବା । ତାଙ୍କଠାରୁ ଉଦ୍‌ବେଗ ମଧ୍ୟ ନୁହେଁ । ଏହିପରି ଲୋକ ହଠି ଏବଂ ପୂର୍ବାଗ୍ରହୀ ହୋଇଥାଆନ୍ତି । ସେମାନେ ବିନାକାରଣରେ ସମସ୍ତଙ୍କଠାରେ ବୈର କରିଥାଆନ୍ତି, ଯେ ଭଲ କରେ ତା'ଠାରେ ମଧ୍ୟ ମନ୍ଦ ଆଚରଣ କରିଥାଆନ୍ତି । ଏପରି ଲୋକଙ୍କ ସମ୍ବନ୍ଧରେ ସନ୍ଥ ତୁଳସୀ ଦାସ ଲେଖିଛନ୍ତି-

ବୟରୁ ଅକାରନ ସବ କାହୁସୋଁ । ଯୋ କର ହିତ ଅନହିତ ତାହୁସୋଂ ।

ଏହିପରି ଆମର ଧର୍ମଗ୍ରନ୍ଥ ଶ୍ରେଷ୍ଠ ଜୀବନ ବଞ୍ଚିବାର ସଂଦେଶ ଦେଇଅଛି ।



# ୭୪. ଅର୍ଥ ଏକ ଅନର୍ଥ ଅନେକ

ଶ୍ରେୟ (କଲ୍ୟାଣ ମାର୍ଗ) ଏବଂ ପ୍ରେୟ (ଭୋଗମାର୍ଗ)ର ପ୍ରାପ୍ତ ହେତୁ ମଧ୍ୟ ଅର୍ଥର ଆବଶ୍ୟକତା ହୋଇଥାଏ; କିନ୍ତୁ ଧର୍ମାନୁକୂଳ ଅର୍ଥୋପାର୍ଜନ ଏବଂ ଧର୍ମ ନିମିତ୍ତ ଅର୍ଥର ବ୍ୟୟ ଆବଶ୍ୟକ। ଏହି କାରଣରୁ ପୁରୁଷାର୍ଥ ଅନ୍ତର୍ଗତ ଅର୍ଥର ବିଶିଷ୍ଟ ସ୍ଥାନ ରହିଛି। ଭଗବାନ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ କହୁଛନ୍ତି-

ଅର୍ଥର ଉପାର୍ଜନ, ବୃଦ୍ଧି, ରକ୍ଷଣ, ବ୍ୟୟ, ନାଶ ଏବଂ ଉପଭୋଗରେ ନିରନ୍ତର ଭୟ, ପରିଶ୍ରମ, ଚିନ୍ତା ଏବଂ ଭ୍ରମ ସହ ହିଁ ଯୁଝିବାକୁ ହୋଇଥାଏ। ଚୋରୀ, ହିଂସା, ମିଥ୍ୟା, ଦମ୍ଭ, କାମ, କ୍ରୋଧ, ଗର୍ବ, ଅହଙ୍କାର, ଭେଦବୁଦ୍ଧି, ବୈର, ଅବିଶ୍ୱାସ ସ୍ପର୍ଦ୍ଧା, ଲମ୍ପଟତା, ଜୁଆ, ମଦ୍ୟପାନ ଏ ପନ୍ଦର ଅନର୍ଥର ହେତୁ ବସ୍ତୁତଃ ଅର୍ଥ ହିଁ ହୋଇଥାଏ। ଅତଃ ଶ୍ରେୟ (କଲ୍ୟାଣ) ଚାହୁଁଥିବା ବ୍ୟକ୍ତିକୁ ଉଚିତ ହେବ ଯେ ସ୍ୱାର୍ଥ ଏବଂ ପରମାର୍ଥ ବିରୋଧୀ ଅର୍ଥ ନାମକ ଅନର୍ଥକୁ ତ୍ୟାଗ କରିଦିଅ। ଭାଇ- ବନ୍ଧୁ, ପତ୍ନୀ- ପୁତ୍ର, ମାତା- ପିତା, ସଖା- ସମ୍ବନ୍ଧୀ ଯେ ସ୍ନେହ ବନ୍ଧନରେ ବାନ୍ଧି ହୋଇଛନ୍ତି, ଅର୍ଥ କାରଣରୁ ହିଁ ଜଣେ ଅନ୍ୟର ଶତ୍ରୁ ହୋଇ ଯାଆନ୍ତି। (ଶ୍ରୀମଦ୍‌ଭାଗବତ ୧୧/୨୩/୧୭-୨୦)

ମନୁ ବୃହସ୍ପତି ସମ୍ବାଦ ଅନ୍ତର୍ଗତ ମନୁ ମହାରାଜଙ୍କ ଉପଦେଶ ହେଉଛି-

ଦୁଃଖମର୍ଥା ହି ଯୁଜ୍ୟନ୍ତେ ପାଳନେ ନଚ ତେ ସୁଖମ୍
ଦୁଃଖେନ ଚାଧିଗମ୍ୟନ୍ତେ ନାଶମେଷାଂ ନ ବିଚିନ୍ତୟେତ୍ ॥
(ମହାଭା. ଶାନ୍ତି, ୨୦୫/୮)

ଅର୍ଥର ଉପାର୍ଜନରେ ଦୁଃଖ, ତାହାର ରକ୍ଷଣରେ ଦୁଃଖ। ଦୁଃଖରୁ ହିଁ ଅର୍ଥ ପ୍ରାପ୍ତି ହୁଏ। ଅତଃ ଏହା ନଷ୍ଟ ହୋଇଗଲେ ଚିନ୍ତା କରିବା ଉଚିତ୍ ନୁହେଁ। ମହାଭାରତରେ ଅନ୍ୟତ୍ର କୁହାଯାଇଛି ଯେ- ଧନୋପାର୍ଜନରେ ଦୁଃଖ, ଧନର ରକ୍ଷଣରେ ଦୁଃଖ ହୁଏ, ଧନର ବ୍ୟୟ ଏବଂ ନାଶରେ ମଧ୍ୟ ଦୁଃଖ ହୋଇଥାଏ। ଏହିପରି ଦୁଃଖଭାଜନ ଅର୍ଥକୁ ଧିକ୍‌କାର। (ମହାଭା. ଅନୁ. ୧୪୫)।

ଏଣୁ ଜ୍ଞାନୀ ପୁରୁଷ ଜାଣନ୍ତି କି ଅର୍ଥ କେବେ କାହାରି ପାଖରେ ସ୍ଥିର ହୋଇ ରହେନାହିଁ। ଅତଃ ଶ୍ରଦ୍ଧାଳୁ ଜନଙ୍କ ଉଚିତ ହେବ କି ସେମାନେ ଅର୍ଥର ଉପଯୋଗ ଦାନ ଆଦି ପୁଣ୍ୟ କାର୍ଯ୍ୟରେ ବିନିଯୋଗ କରନ୍ତୁ।



# ୭୫. ମାନସିକ ଆବେଗ ଏବଂ ରୋଗ ଉତ୍ପତ୍ତି

କ୍ରୋଧ, ଈର୍ଷ୍ୟା, ଦ୍ୱେଷ ଭୟ ଆଦି ମାନସିକ ଉଦ୍‌ବେଗ ଉତ୍ପନ୍ନ ହେବାପରେ ତାତ୍‌କାଳିକ ରୂପେ ହେଉଥିବା ସ୍ଥିତିର ମୁକାବିଲା କରିବା ଉଦ୍ଦେଶ୍ୟରେ ବା ସେହି ପରିସ୍ଥିତିରୁ ପଳାୟନ କରିବା ହେତୁ ଶରୀର ମଧ୍ୟରେ ବିଶେଷ କ୍ରିୟାତ୍ମକ ସଂସ୍ଥାନର ପରିବର୍ତ୍ତନ ହେବାକୁ ଲାଗେ । ମାନସିକ ଆବେଗ ପ୍ରତି ଶରୀରର ଏହି ପ୍ରତିକ୍ରିୟା 'ଫ୍ଲାଇଟ୍ ଆଣ୍ଡ ଫ୍ଲାଇଟ୍ ରେସପନସ୍' କୁହାଯାଏ । ଏହି କ୍ରିୟାପରେ ଚୟ ପଚୟାତ୍ମକ କ୍ରିୟା, ଜୈବ ରସାୟନିକ କ୍ରିୟା, ଅନ୍ତଃସ୍ରାବୀ ତନ୍ତ୍ର କ୍ରିୟା ଅତ୍ୟନ୍ତ ତୀବ୍ର ଭାବେ ସଂଘଟିତ ହୋଇଥାଏ । ଶରୀରର ମାଂସପେଶୀ ଅସ୍ୱାଭାବିକ ସ୍ଥିତିକୁ ଆସିଯାଏ । ଶରୀରରେ ସ୍ୱାଭାବିକ ନିଶ୍ଚିତ ମାତ୍ରା ରହିଥାଏ, ମାନସିକ ଉଦ୍‌ବେଗ ସ୍ଥିତିରେ କିଛି ବିଶିଷ୍ଟ ସ୍ଥାନ (ମାଂସପେଶୀ, ହୃଦୟ, ଫୁସ୍‌ଫୁସ୍ ଏବଂ ମସ୍ତିଷ୍କ)ର ଆବଶ୍ୟକତା ହଠାତ୍ ବଢ଼ିଯିବା ହେତୁ ରକ୍ତ ମାତ୍ରା ଅଧିକ ପହଞ୍ଚିବାରେ ଲାଗିଯାଏ । ଫଳରେ ଶରୀରର ଅନ୍ୟ ଅଂଶରେ ସେହି ସମୟରେ ରକ୍ତ ମାତ୍ରା ଆବଶ୍ୟକତାଠାରୁ କମ୍ ପହଞ୍ଚି ଥାଏ । ଏହି ପ୍ରକ୍ରିୟାର ପରିଣାମ ସ୍ୱରୂପ ପାଚନ ସଂସ୍ଥାର କାର୍ଯ୍ୟ ହ୍ରାସ ହୋଇଥାଏ ଏବଂ ରୋଗ ପ୍ରତିରୋଧକ ତନ୍ତ୍ରର କାର୍ଯ୍ୟ ମଧ୍ୟ ଅତ୍ୟନ୍ତ ମନ୍ଦ ହୋଇଯାଏ । ଯାହାର ଦୁଷ୍ପରିଣାମ ବିଭିନ୍ନ ପ୍ରକାର ବ୍ୟାଧିରୂପରେ ଆମକୁ ପ୍ରାପ୍ତ ହୋଇଥାଏ । ଏକ ବୈଜ୍ଞାନିକ କଥନ ହେଉଛି ଶରୀରକୁ ଏହି ପ୍ରକାର ସୁରକ୍ଷାତ୍ମକ ପ୍ରକ୍ରିୟାରେ ପ୍ରାଚୀନରୁ ଏ ଯାବତ୍ କିଛି ମଧ୍ୟ ପରିବର୍ତ୍ତନ ହୋଇନାହିଁ । ଅତଃ ଏହିପରି ମାନସିକ ଆବେଗରୁ ମୁକ୍ତ ରହିବା ଶରୀର ସ୍ୱାସ୍ଥ୍ୟ ପାଇଁ ଉପଯୋଗୀ ଏବଂ ରୋଗ ମୁକ୍ତିର ଉପାୟ ମଧ୍ୟ ।

ମାନସିକ ଚାପ ବହୁତ ସାଧାରଣରୁ ଜଟିଳତମ ରୋଗର କାରଣ, ପାଚନତନ୍ତ୍ର ରୋଗ, କଟୀଶୂଳ, ମଧୁମେହ, ତ୍ୱଚାବିକାର, ଶ୍ୱାସରୋଗ, ଅନିଦ୍ରା, ଅବସାଦ, ଅକାଳ ବାର୍ଦ୍ଧକ୍ୟ, କ୍ୟାନ୍‌ସର, ହୃଦ୍‌ରୋଗ ଆଦିର ସୃଷ୍ଟିରେ ଦୀର୍ଘ ସମୟ ମାନସିକ ଚାପର ଅତ୍ୟଧିକ ମହତ୍ତ୍ୱ । ଏ ପରିପ୍ରେକ୍ଷୀରେ ସ୍ୱାର୍ଥ ରକ୍ଷା ହେତୁ ଆୟୁର୍ବେଦ ରସାୟନ ଅନୁପାଳନୀୟ ।



# ୭୬. ଆୟୁର୍ବେଦ ରସାୟନ

ଆଚରଣ ସମ୍ବନ୍ଧୀୟ ବହୁବିଧ ସୂତ୍ରକୁ ଗୋଟିଏ ସ୍ଥାନରେ ଆଚାର ରସାୟନ ରୂପେ ଆଚାର୍ଯ୍ୟ ଚରକ ଅତିସୁନ୍ଦର ସଂଗ୍ରହ କରିଅଛନ୍ତି ।

ସତ୍ୟବାଦିନ ମକ୍ରୋଧଂ ନିବୃତ୍ତଂ ମଦ୍ୟମୈଥୁନାତ୍
ଅହିଂସକମନାୟାସଂ ପ୍ରଶାନ୍ତ ପ୍ରିୟବାଦିନମ୍
ଜପଶୌଚ ପରଂଧୀରଂ ଦାନନିତ୍ୟ ତପସ୍ୱିନମ୍
ଦେବଗୋ ବ୍ରାହ୍ମଣାଚାର୍ଯ୍ୟ ଗୁରୁବୃଦ୍ଧାର୍ଚ୍ଚନେରତମ୍
× × × × × ×
ଉପାସିତାରଂ ବୃଦ୍ଧାନା ମାସ୍ତିକାନାଂ ଜିତାତ୍ମନାମ
ଧର୍ମଶାସ୍ତ୍ର ପରଂ ବିଦ୍ୟାନ୍ନରଂ ନିତ୍ୟ ରସାୟନମ୍ ॥
(ଚରକ ସଂହିତା, ଚିକିତ୍ସା ସ୍ଥାନ ୧/ ୪ / ୩୦-୩୪)

ସତ୍ୟବାଦୀ, ଅକ୍ରୋଧୀ, ମଦ୍ୟ ଏବଂ ମୈଥୁନ ନ କରିବା ବ୍ୟକ୍ତି, ଅଧିକ ପରିଶ୍ରମ ନ କରୁଥିବା ବ୍ୟକ୍ତି, ଶାନ୍ତିଚିତ୍ତ, ପ୍ରିୟଭାଷୀ, ଭଗବତ୍ ନାମ ଜପ କରୁଥିବା ବ୍ୟକ୍ତି, ପବିତ୍ର ଆଚରଣଶୀଳ, ଧୈର୍ଯ୍ୟବାନ୍, ଦାନଶୀଳ, ତପଆଚରଣକାରୀ, ଦେବତା, ଗୋ, ବ୍ରାହ୍ମଣ ଆଚାର୍ଯ୍ୟ ତଥା ଗୁରୁ ଏବଂ ବୃଦ୍ଧ ବ୍ୟକ୍ତିଙ୍କ ସେବା ଅର୍ଚ୍ଚନାକାରୀ, କେବେ ବି କ୍ରୂର ଆଚରଣ କରୁନଥିବା, ସଦୈବ, ସଭିଙ୍କ ଉପରେ ଦୟା କରୁଥିବା ବ୍ୟକ୍ତି, ଉଚିତ ସମୟରେ ଉଚିତ କାଳରେ ଉଚିତ ସମୟ ପର୍ଯ୍ୟନ୍ତ ଶୋଇବା ଏବଂ ଜାଗ୍ରତ ବ୍ୟକ୍ତି, ଦୁଗ୍ଧ ଓ ଘୃତର ସମ୍ୟକ ସେବନକାରୀ, ଦେଶ ଏବଂ କାଳ ଅନୁସାରେ ବ୍ୟବହାର କରୁଥିବା, ଯୁକ୍ତି ପୂର୍ବ କାର୍ଯ୍ୟ କରୁଥିବା, ଅହଙ୍କାର ରହିତ, ଉତ୍ତମ ଆଚାର ବିଚାର ଯୁକ୍ତ, ସଂକୀର୍ଣ୍ଣ ବିଚାର ରହିତ, ଆଧାତ୍ମିକ ଦିଗକୁ ପ୍ରବୃତ୍ତ ଇନ୍ଦ୍ରିୟ ବ୍ୟକ୍ତି, ବୃଦ୍ଧ, ଧର୍ମ ପରାୟଣ ଏବଂ ଜିତେନ୍ଦ୍ରିୟଙ୍କ ସେବାକାରୀ ତଥା ଧର୍ମ ଏବଂ ଶାସ୍ତ୍ରାନୁସାରେ ଆଚରଣ ରତ ରହୁଥିବା ବ୍ୟକ୍ତି ସହଜରେ ହିଁ ରସାୟନର ଗୁଣକୁ ପ୍ରାପ୍ତ କରିଥାଏ, ଅର୍ଥାତ୍ 'ନିତ୍ୟ ରସାୟନ'ର ସେବନ କରିଥାଏ ।



# ୭୭. ତ୍ରିଗୁଣାତ୍ମିକା ମାୟା

ନିଜ ଗୁଣମୟୀ ଦୈବୀ ମାୟାକୁ ସ୍ୱୟଂ ଶ୍ରୀହରି ଦୂରତ୍ୟୟା କହିଅଛନ୍ତି । ଏହାକୁ ଅତିକ୍ରମ କରିବା ପ୍ରାୟତଃ ଜଟିଳ । ଉତ୍ପତ୍ତି- ସ୍ଥିତି- ସଂହତି- ନିଗ୍ରହ ଓ ଅନୁଗ୍ରହ କାରିଣୀ ମାୟା ପ୍ରଭୁଙ୍କ ଅଚିନ୍ତ୍ୟ ଏବଂ ଅନିର୍ବଚନୀୟ ଶକ୍ତି ।

ଦାର୍ଶନିକ ପୃଥିବୀରେ ଶକ୍ତି କାର୍ଯ୍ୟାନୁମେୟା ସିଦ୍ଧ ହୋଇଥାଏ । କାର୍ଯ୍ୟରୂପକ ଫଳର ବଳରେ କାରଣ ଗତ ଶକ୍ତିର ଅନୁମାନ ମାତ୍ର ହୋଇଥାଏ । ଏହାର ପ୍ରତ୍ୟକ୍ଷ ଅନୁଭବ ହୁଏନାହିଁ । ଉଦାହରଣାର୍ଥ- ଅଙ୍ଗାରର ପ୍ରତ୍ୟକ୍ଷ ଦର୍ଶନ ହୋଇଥାଏ । ଏହାର ସ୍ପର୍ଶରେ ଦାହ ରୂପକ ସ୍ଫୋଟାତ୍ମକ କାର୍ଯ୍ୟର ମଧ୍ୟ ପ୍ରତ୍ୟକ୍ଷ ଅଧିଗମ ହୋଇଥାଏ, କିନ୍ତୁ ଅଗ୍ନିରେ ରହିଥିବା ଦାହିକା ଶକ୍ତିର କେବଳ କାର୍ଯ୍ୟ ବଳ ଉପରେ ଅନୁମାନ ହୋଇଥାଏ ।

ସତ୍ତ୍ୱ, ରଜସ୍ ଓ ତମସ୍ ସଂଜ୍ଞକ ତ୍ରିଗୁଣର ସାମ୍ୟାବସ୍ଥା ପ୍ରକୃତି ହେଉଛି 'ମାୟା' । ଏହା ଭାଗବତ୍ ତତ୍ତ୍ୱରେ ସମାଶ୍ରିତ ରହି କାର୍ଯ୍ୟକ୍ଷମ ହୋଇଥାଏ । ମହାପ୍ରଳୟରେ ମହେଶ୍ୱରଙ୍କ ମାୟା ଶକ୍ତି ତାଙ୍କଠାରେ ଏକୀଭୂତ ହୋଇ ସ୍ଥିରରହିଥାଏ । ସର୍ଗ ଅବସ୍ଥାରେ ତାହା କାଳ, ସ୍ୱଭାବ, କର୍ମ ଏବଂ ଗୁଣ ଦ୍ୱାରରେ ଜୀବଙ୍କ ନିବନ୍ଧନରେ ହେତୁ ହୋଇଥାଏ । ଅଭିପ୍ରାୟ ଏହିକି ମାୟା କାଳ, ସ୍ୱଭାବ, କର୍ମ ଏବଂ ଗୁଣର ଦ୍ୱାରରେ ଜୀବକୁ ବ୍ୟାପିଥାଏ । ସାକ୍ଷାତ୍ ହୁଏ ନାହିଁ ।

ଫିରତ ସଦା ମାୟା କର ପ୍ରେରା । କାଲ କର୍ମ ସୁଭାବ ଗୁନଘେରା । (ରା.ଚ.ମା ୭/୪୪/୫) ।

କାରଣକୁ କାର୍ଯ୍ୟ ଦିଗରେ କାର୍ଯ୍ୟକୁ କାରଣ ଅନୁରୂପ କରୁଥିବା ତତ୍ତ୍ୱ ହେଉଛି 'କାଳ' । କ୍ଷୁବ୍ଧ କାରଣକୁ ବା କାର୍ଯ୍ୟକୁ କାରଣ ବା କାର୍ଯ୍ୟର ଅଭିମୁଖ କରୁଥିବା ତତ୍ତ୍ୱ 'ସ୍ୱଭାବ' ।

କାରଣ ବା କାର୍ଯ୍ୟର ଉନ୍ମୁଖ ବସ୍ତୁକୁ କାରଣ ବା କାର୍ଯ୍ୟ ରୂପରେ ପରିଣତ କରୁଥିବା ତତ୍ତ୍ୱ 'କର୍ମ' ।

କର୍ମର ଫଳ ସ୍ୱରୂପ ସଂପ୍ରାପ୍ତ ବସ୍ତୁର ସେବନରେ ପ୍ରାପ୍ତ ସୁଖାନୁଭୂତି ବା ଦୁଃଖାନୁଭୂତି ହେଉଛି 'ଗୁଣ' ।

ଉଦାହରଣାର୍ଥ- ଗରମଦୁଧରେ ଦହି କରିବା ଅନୁରୂପ ଅମ୍ଳର ସଂଯୋଗ କାଳାତ୍ମକ । ଫଳସ୍ୱରୂପ ଦୁଧରେ ଦହି ହେବାର କ୍ଷୋଭ ସମୁତ୍ପନ୍ନ ହୁଏ । କ୍ଷୁବ୍ଧ ଦୁଧକୁ ଦହି ହେବାର ଉପଯୁକ୍ତ ଗତିପ୍ରଦାନ କରିବା ହେଉଛି ସ୍ୱଭାବ । ଭୋକ୍ତାର ଅଦୃଷ୍ଟ ଯୋଗରେ ଦୁଗ୍ଧକୁ ଦହି ରୂପ ପ୍ରଦାନ କରିବା କର୍ମ । ଦଧି ସେବନରେ ସଂପ୍ରାପ୍ତ ସୁଖାନୁଭୂତି ଅଥବା ଦୁଃଖାନୁଭୂତି ହେଉଛି ଗୁଣ ।

**(କାଶୀସୁମେରୁ ପୀଠାଧୀଶ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ସ୍ୱାମୀ ଚିନ୍ମୟାନନ୍ଦ ସରସ୍ୱତୀ ମହାରାଜ)**



# ୭୮. ଈଶ୍ୱର ଯୋଗ ଏବଂ ଆହାର

ଯେଉଁ ଚତୁର ଲୋକ ବୁଝିଥାଆନ୍ତି ଯେ ଈଶ୍ୱରଙ୍କୁ ମୁଁ ଠକିଦେବି ଅର୍ଥାତ୍ ମୋ' ଚାଲାଖି ଈଶ୍ୱର କଦାପି ଜାଣି ପାରିବେ ନାହିଁ, ସେମାନେ ବିରାଟ ଭ୍ରମରେ ପଡ଼ିଛନ୍ତି । ଶାସ୍ତ୍ର ଅନୁସାରେ ଈଶ୍ୱରଙ୍କୁ ମନବାଲା ମାନି ହେବନାହିଁ । ମନବାଲା ତ କାର୍ଯ୍ୟୋପାଧିକ ଜୀବ । ଈଶ୍ୱର କାରଣୋପାଧିକ । କାରଣ ରୂପକ ମାୟାରେ ମନରୂପକ କାର୍ଯ୍ୟ ନାହିଁ । କାର୍ଯ୍ୟ ନହୋଇଥିବାରୁ ସଂକଳ୍ପ ମଧ ନାହିଁ । ଈଶ୍ୱରଙ୍କର ନିଜର କୌଣସି ସଂକଳ୍ପ ହୋଇନଥାଏ । ଶ୍ରୀବାଚସ୍ପତି ମିଶ୍ର କହନ୍ତି କି ଅନ୍ତଃକରଣୋପାଧିକ ହେଉଛି ଜୀବ । ଅନ୍ତଃକରଣ ଭାବୋପାଧିକ ଈଶ୍ୱର । ଭାବାଭବୋପାଧି ବିନିର୍ମୁକ୍ତ ନିରୁପାଧିକ ହେଉଛି ବ୍ରହ୍ମ । ବ୍ରହ୍ମଙ୍କଠାରେ ସମସ୍ତ ଉପାଧି ଅନିର୍ବଚନୀୟ ।

ଯେଉଁ ଲୋକ ଭାବନ୍ତି କି ମୁଁ ଆହାର ତ୍ୟାଗ କରି ବା ଶ୍ୱାସରୋଧ କରି ଈଶ୍ୱରଙ୍କୁ ପ୍ରାପ୍ତ କରିଦେବି ସେମାନେ ଭ୍ରମରେ ଅଛନ୍ତି । ଧ୍ରୁବ ପ୍ରାଣାୟାମ କଲା, କିନ୍ତୁ ବିରାଟ ବିଶ୍ୱ ସହିତ ତଦାତ୍ମ କରି ପ୍ରାଣାୟାମ କଲା । ଫଳ ସ୍ୱରୂପ ହିରଣ୍ୟଗର୍ଭଙ୍କ ଆସନ ଟଳିଲା, ହିରଣ୍ୟଗର୍ଭଙ୍କୁ ପ୍ରାର୍ଥନା କରି ଅନ୍ତର୍ଯାମୀ ନାରାୟଣଙ୍କ ଆବିର୍ଭାବ ହେଲା । ପ୍ରାର୍ଥନାରେ କହିଲେ- ଯେ ମୋ' ଭିତରେ ପ୍ରବଶ କରି ନିଜ ଜ୍ୟୋତିରେ ମୋ'ର ଶୁପ୍ତ ବାଣୀକୁ ଏବଂ ହସ୍ତ, ପଦ, ଶ୍ରବଣ- ତ୍ୱଚାଦି ଅନ୍ୟ ଇନ୍ଦ୍ରିୟଙ୍କୁ ଏବଂ ପ୍ରାଣକୁ ସଂଜୀବିତ କରୁଅଛନ୍ତି ସେହି ଅଖିଳ ଶକ୍ତିଧର ଅନ୍ତର୍ଯାମୀ ପୁରୁଷ ଭଗବାନଙ୍କୁ ନମସ୍କାର ।

ଭୋଜନରେ ସମତା ହେବା ଉଚିତ । ଭୋଜନର ଅଭିପ୍ରାୟ ସବୁ ଇନ୍ଦ୍ରିୟଙ୍କ ବିଷୟ ଗ୍ରହଣ । ଯଦି କେହି ତିନିଘଣ୍ଟା ସିନେମା ଦେଖେ ସେ ତା'ପରେ ଧ୍ୟାନ କରି ପାରିବ ନାହିଁ । ଅତ୍ୟଧିକ ଭୋଜନକାରୀ ଯୋଗ କରିପାରେନାହିଁ । ଅନସନକାରୀ ମଧ ଯୋଗ ସାଧନରେ ଅନୁପଯୁକ୍ତ । ଶତପଥ ବ୍ରାହ୍ମଣରେ କୁହାଯାଇଛି ନିଜକୁ ଯେତିକି ଅନ୍ନ ଅନୁକୂଳ, ତାହା ନିଜକୁ ହାନିକରେ ନାହିଁ । ଅନ୍ନରେ ଛ'ଗୁଣ ହେବା ଉଚିତ- ସୌରୂପ୍ୟ, ସୌରଭ୍ୟ, ସୁସ୍ୱାଦତ୍ୱ, ସୁପାଚ୍ୟତ୍ୱ, ସୌମନସ୍ୟ ଏବଂ ସୌହିତ୍ୟ ।



# ୭୯. ଭୋଜନରେ ଦୋଷ

ଜୀବନ ଉପଯୋଗୀ ଭୋଜନରେ ମଧ୍ୟ ଜାତି ଦୋଷ, ଆଶ୍ରୟ ଦୋଷ ନିମିତ୍ତ ଦୋଷରୁ ମୁକ୍ତ କରି ଭୋଜନ କରିବା ଉଚିତ । ମାଂସାଦିରେ ଜାତିଦୋଷ ରହିଛି । ଭୋଜନ ପ୍ରସ୍ତୁତ ହେଉଥିବା ବାସନ ଆଦି ଠିକ୍ ନହେଲେ ଆଶ୍ରୟ ଦୋଷ ହୋଇଥାଏ । ଭୋଜନ ପ୍ରସ୍ତୁତ କରୁଥିବା ବ୍ୟକ୍ତି ଶୁଦ୍ଧ ଏବଂ ପ୍ରସନ୍ନ ହେବା ଉଚିତ । ଯଦି କେହି କାନ୍ଦିକାନ୍ଦି ଭୋଜନ ପ୍ରସ୍ତୁତ କରିବ ସେ ଅନ୍ନ ଯେ ଖାଇବ ସେ ମଧ୍ୟ ଦୁଃଖୀ ହେବ କିମ୍ବା କାନ୍ଦିବ । କେହି ଭୋଜନକୁ ଉଚ୍ଛିଷ୍ଟ କରି ଦେଲା ଅଥବା ଭୋଜନରୁ କେଶ ଇତ୍ୟାଦି ଅପବିତ୍ର ବସ୍ତୁ ପଡ଼ିଗଲା, ତେବେ ନିମିତ୍ତ ଦୋଷ ହୋଇଯିବ ।

ସର୍ବେଷା ମେବ ଶୌଚାନା ମର୍ଥ ଶୌଚଂ ପରଂ ସ୍ମୃତମ୍
ଯୋଽର୍ଥେ ଶୁଚିର୍ହି ସ ଶୁଚିର୍ନ ମୃଦ୍ୱାରି ଶୁଚିଃ ଶୁଚିଃ ॥
(ମନୁ- ୫/୧୦୬)

ସବୁ ପବିତ୍ରତା ମଧ୍ୟରେ ଧନର ପବିତ୍ରତା ସବୁଠାରୁ ପ୍ରଧାନ । ଯେଉଁ ଧନ ପବିତ୍ର ତାହା ପବିତ୍ର । ମାଟି ଜଳଦ୍ୱାରା ପବିତ୍ର ପବିତ୍ର ନୁହେଁ ।

ଭୋଜନ ନିଜ ଅର୍ଜିତ ସଂପତ୍ତିରେ ହେବା ଉଚିତ । ଅନ୍ୟର ସ୍ୱତ୍ୱ ଛଡ଼ାଇ ଆଣି, ଚୋରୀଦ୍ୱାରା, ଛନ୍ଦକପଟ କରି ଭୋଜନ କରିବାରେ ମନ ମଳିନ ହେବ । ଏହା କେବଳ ଅନ୍ନ ପାଇଁ ନୁହେଁ, ସଂପୂର୍ଣ୍ଣ ଇନ୍ଦ୍ରିୟ ଆହାର ପାଇଁ ଆହାର ନିୟମ ହେବା ଉଚିତ । ନିୟମିତ ଆହାର ଶରୀର ରୋଗର ତ ନାଶ କରିଥାଏ, ମନର ରୋଗକୁ ମଧ୍ୟ ନାଶକରେ । ଅଧିକ ଖାଇବା ଦ୍ୱାରା ଅଜୀର୍ଣ୍ଣ ହୋଇଥାଏ, ଅଜୀର୍ଣ୍ଣ ହେଲେ କାମ- କ୍ରୋଧ ବୃଦ୍ଧି ହୁଏ । କାମକ୍ରୋଧ ମନର ଅଜୀର୍ଣ୍ଣ । ନିୟମିତ ସନ୍ତୁଳିତ ଖାଦ୍ୟ ସେବନରେ ଶରୀର ସୁସ୍ଥ ରହିବା ସହ ମନ ସୁସ୍ଥ ଓ ପ୍ରସନ୍ନ ରହେ । ପରିଣାମରେ ଜୀବନ ସୁଖ- ଶାନ୍ତି ଆନନ୍ଦରେ ପୂର୍ଣ୍ଣ ହୋଇଥାଏ ।



# ୮୦. ସୁଖ- ଦୁଃଖ

ମାନବ ଜୀବନରେ ସୁଖ- ଦୁଃଖର ଅବସର ଆସିଥାଏ । କେହି ଧନ ଅର୍ଜନ କରିବା ଲାଳସାରେ ରାତିଦିନ ଏକ କରି ଦେଇଛନ୍ତି, କେହି ସଭାରେ ସମ୍ମାନ ପାଇବା ପାଇଁ ବ୍ୟାକୁଳ ହୋଇ ଭାବରାଜ୍ୟରେ ବାତୁଳ ପ୍ରାୟ ଅଛନ୍ତି । ଅନ୍ୟ କାହାକୁ ସଂସାର ନାରୀମୟ ଦେଖାଯାଉଛି, ଅନ୍ୟ କେହି କନ୍ୟାର ବିବାହ ଚିନ୍ତାରେ ମ୍ରିୟମାଣ, କାହାର ପାରିବାରିକ ସମସ୍ୟାକୁ ନେଇ ବ୍ୟଥିତ, ଚାକିରି ପାଇବା ପାଇଁ କେହି ଗଳଦ୍‌ଘର୍ମ । ନିଜର ପ୍ରଯତ୍ନରେ କୃତକାର୍ଯ୍ୟ ହେବାପରେ ତାହାକୁ ସୁଖ ମିଳିଥାଏ ଏବଂ ଅସଫଳ ହେଲେ ଦୁଃଖ । ଏ ସୁଖ- ଦୁଃଖ ଆମର ଅନୁକୂଳ ଓ ପ୍ରତିକୂଳ ମାନସିକ ସ୍ଥିତିର ପରିଚାୟକ । ଦୁଃଖ ସୁଖର ପରିଭାଷା ଏହିପରି- "ଅନୁକୂଳ ବେଦନୀୟଂ ସୁଖମ୍, ପ୍ରତିକୂଳ ବେଦନୀୟଂ ଦୁଃଖମ୍ ।" ଏକ ସାଧାରଣ ଦୃଷ୍ଟାନ୍ତରେ ଏହାକୁ ବୁଝିନେବା । ଶୀତକାଳରେ ଆମେ ଖରାରେ ବସିବା ଭଲଲାଗେ ଏବଂ ଜ୍ୟେଷ୍ଠ ଦ୍ୱିପ୍ରହରରେ ଆମେ ଖରାରୁ ରକ୍ଷା ପାଇବାକୁ ଇଚ୍ଛାକରୁ, ଆନନ୍ଦର ଅନୁଭବ ସୁଖରେ କରାଯାଇଥାଏ ଏବଂ ଦୁଃଖରେ ମଧ୍ୟ ।

ସନାତନ ଧର୍ମର ଶାସ୍ତ୍ରକାରମାନେ ଜୀବନ ଚର୍ଯ୍ୟାର ଏପରି ବିଧାନ କରିଛନ୍ତି ଯେ ସେମାନଙ୍କ ଅନୁସାରେ ଆଚରଣ କରି ଏବଂ ତଦନୁସାରେ ଚଳି ସୁଖ- ଦୁଃଖର ଅବସରରେ ତହିଁରେ ପ୍ରଭାବିତ ନହୋଇ ଆନନ୍ଦମୟ ଜୀବନ ଦିଗରେ ନିରନ୍ତର ଆଗ୍ରସର ହୋଇପାରିବା, ଜୀବନ ବର୍ଷ, ମାସ, ଦିନ, ଘଣ୍ଟା, ପାଳ, କ୍ଷଣରେ ବିଭାଜିତ ହୋଇଛି । ପ୍ରଥମେ ଦିନଚର୍ଯ୍ୟାକୁ ଆନନ୍ଦମୟ କରିବାର ପ୍ରଯତ୍ନ କରିବା । ଯଥା ସମ୍ଭବ ସମତାକୁ ଧରିରଖିବାର ପ୍ରୟାସୀ ହେବା ।



# ନବଦୁର୍ଗା

## ୮୧. (୧) ଶୈଳପୁତ୍ରୀ

ବନ୍ଦେ ବାଞ୍ଛିତ ଲାଭାୟ ଚନ୍ଦ୍ରାର୍ଦ୍ଧ କୃତ ଶେଖରାମ୍
ବୃଷାରୂଢ଼ାଂ ଶୂଳଧରାଂ ଶୈଳପୁତ୍ରୀଂ ଯଶ ସ୍ୱିନୀମ୍ ॥

ଆଦି ମାତା ଦୁର୍ଗା ସୃଷ୍ଟିର ଆଦିଶକ୍ତି । ତାଙ୍କ ପ୍ରଥମ ସ୍ୱରୂପର ନାମ ଶୈଳପୁତ୍ରୀ । ହିମାଳୟ କନ୍ୟା ହେତୁ ସେ ଶୈଳପୁତ୍ରୀ । ନବଦୁର୍ଗାଙ୍କ ମଧ୍ୟରୁ ସେ ଆଦ୍ୟ । ଦେବୀ ବୃଷଭ ବାହନା, ତାଙ୍କ ଦକ୍ଷିଣ ହସ୍ତରେ ତ୍ରିଶୂଳ ଏବଂ ବାମ ହସ୍ତରେ ପଦ୍ମଶୋଭା ପାଏ ।

ପୂର୍ବ ଜନ୍ମରେ ସେ ଦକ୍ଷ ପ୍ରଜାପତିଙ୍କ କନ୍ୟା ଥିଲେ । ପିତ୍ରାଳୟରେ ଅନୁଷ୍ଠିତ ଯଜ୍ଞରେ ପତି ନିନ୍ଦା ସହିନପାରି ଯଜ୍ଞାଗ୍ନିରେ ଶରୀର ବିସର୍ଜନ କଲେ । ପରଜନ୍ମରେ ହିମାଳୟଙ୍କ ପୁତ୍ରୀ ଭାବେ ଜନ୍ମ ହେଲେ ଏବଂ ଶୈଳପୁତ୍ରୀ ନାମରେ ନାମିତ ହେଲେ । ସେ ପାର୍ବତୀ, ହୈମବତୀ ଭାବରେ ମଧ୍ୟ ସୁପରିଜ୍ଞାତ । ଉପନିଷଦର ଏକ ଆଖ୍ୟାନ ଆଧାରରେ କୁହାଯାଏ ଯେ ସେ ହୈମବତୀ ସ୍ୱରୂପରେ ଦେବତାମାନଙ୍କର ଗର୍ବ ଭଂଜନ କରିଥିଲେ ।

ଶୈଳପୁତ୍ରୀ ପୂର୍ବଜନ୍ମ ପରି ଏ ଜନ୍ମରେ ମଧ୍ୟ ଶିବଙ୍କ ଅର୍ଦ୍ଧାଙ୍ଗିନୀ ହେଲେ । ନବଦୁର୍ଗାଙ୍କ ମଧ୍ୟରେ ପ୍ରଥମ ଏହି ଶୈଳପୁତ୍ରୀ ଦେବୀଙ୍କର ଶକ୍ତି ତଥା ମହତ୍ତ୍ୱ ଅଶେଷ । ନବରାତ୍ର ପୂଜାରେ ପ୍ରଥମ ଦିନ ଏହାଙ୍କ ପୂଜା କରାଯାଏ । ଏହି ପ୍ରଥମ ଦିବସ ଉପାସନାରେ ଯୋଗୀ ନିଜ ମନକୁ 'ମୂଳାଧାର' ଚକ୍ରରେ ରଖନ୍ତି, ଏହିଠାରୁ ତାଙ୍କର ଊର୍ଦ୍ଧ୍ୱ ଗତି କ୍ରମଶଃ ହୋଇଥାଏ ।



# ୮୨. (୨) ବ୍ରହ୍ମଚାରିଣୀ

ଦଧାନାକର ପଦ୍ମାଭ୍ୟାଂମକ୍ଷ ମାଳା କମଣ୍ଡଳୁ
ଦେବୀ ପ୍ରସୀଦତୁମୟୀ ବ୍ରହ୍ମଚାରିଣ୍ୟ ନୁତ୍ତମାଃ ॥

ମାତା ଦୁର୍ଗାଙ୍କର ନବଶକ୍ତିର ଦ୍ୱିତୀୟ ସ୍ୱରୂପ ହେଉଛି ବ୍ରହ୍ମଚାରିଣୀ । ଏଠାରେ 'ବ୍ରହ୍ମ' ଶବ୍ଦ ତପସ୍ୟା ଅର୍ଥରେ ପ୍ରଯୁକ୍ତ । ବ୍ରହ୍ମଚାରିଣୀ ଅର୍ଥ ତପଃଚାରିଣୀ । ବ୍ରହ୍ମ ଶବ୍ଦ ବେଦ, ତତ୍ତ୍ୱ ଓ ତପ ଅର୍ଥରେ ପ୍ରଯୁକ୍ତ । ବ୍ରହ୍ମଚାରିଣୀ ଦେବୀଙ୍କ ସ୍ୱରୂପ ପୂର୍ଣ୍ଣଜ୍ୟୋତିର୍ମୟ ଓ ଅତ୍ୟନ୍ତ ଭବ୍ୟ । ତାଙ୍କ ଦକ୍ଷିଣ ହସ୍ତରେ ଜପମାଳା ଓ ବାମହସ୍ତରେ କମଣ୍ଡଳୁ ଶୋଭାପାଏ ।

ହିମାଳୟ ପୁତ୍ରୀ ହୋଇ ଜନ୍ମ ହେବା ପରେ ବୟଃକ୍ରମରେ ନାରଦଙ୍କ ଉପଦେଶ କ୍ରମେ ଶିବଙ୍କୁ ପତିରୂପେ ପ୍ରାପ୍ତ କରିବା ପାଇଁ ଘୋର ତପସ୍ୟରତ ହେଲେ । ପର୍ଯ୍ୟାୟ କ୍ରମେ ଫଳମୂଳ, ଶାକପତ୍ର ଏବଂ ବୃକ୍ଷ ପତିତ ପତ୍ର ସେବନରେ ବିତାଇ ଶେଷକୁ ପର୍ଣ୍ଣ ମଧ୍ୟ ତ୍ୟାଗ କଲେ । ତେଣୁ ସେ ଅପର୍ଣ୍ଣା ନାମରେ ଖ୍ୟାତ ହେଲେ । ତାଙ୍କର ଅନ୍ୟ ଏକ ନାମ ଉମା ।

ମାତା ଦୁର୍ଗାଙ୍କର ଏହି ଦ୍ୱିତୀୟ ସ୍ୱରୂପ, ଭକ୍ତ ଓ ସିଦ୍ଧମାନଙ୍କୁ ଅନନ୍ତ ଫଳ ପ୍ରଦାନ କରନ୍ତି । ଏହି ଉପାସନାରେ ମନୁଷ୍ୟ ତପ, ତ୍ୟାଗ, ବୈରାଗ୍ୟ, ସଦାଚାର ଓ ସଂଜମ ବୃଦ୍ଧି ହୁଏ । ମାତା ବ୍ରହ୍ମଚାରିଣୀଙ୍କ କୃପାରୁ ସେ ସର୍ବତ୍ର ସିଦ୍ଧି ଓ ବିଜୟ ପ୍ରାପ୍ତ ହୁଏ । ନବରାତ୍ର ପୂଜାର ଦ୍ୱିତୀୟ ଦିନରେ ଦେବୀଙ୍କର ଏହି ସ୍ୱରୂପକୁ ଉପାସନା କରାଯାଏ । ସେହି ଦିନରେ ସାଧକର ମନ 'ସ୍ୱାଧିଷ୍ଠାନ' ଚକ୍ରରେ ସ୍ଥିତ ହୁଏ । ଯେଉଁ ଯୋଗୀଙ୍କ ମନ ଉକ୍ତ ଚକ୍ରରେ ସ୍ଥିର ରହେ ସେ ଦେବୀଙ୍କ କୃପା ତଥା ଭକ୍ତି ଲାଭ କରିଥାଆନ୍ତି ।



# ୮୩. (୩) ଚନ୍ଦ୍ରଘଣ୍ଟା

ପିଣ୍ଡଜ ପ୍ରବରାରୂଢ଼ା ଚଣ୍ଡକୋପାସ୍ତ୍ର କୈର୍ଯୁତା
ପ୍ରସାଦଂ ତନୁତେ ମହ୍ୟଂ ଚନ୍ଦ୍ର ଘଣ୍ଟେତି ବିଶ୍ରୁତା ॥

ଦେବୀ ଦୁର୍ଗାଙ୍କର ତୃତୀୟ ଶକ୍ତିର ନାମ ଚନ୍ଦ୍ରଘଣ୍ଟା । ନବରାତ୍ର ଉପାସନାର ତୃତୀୟ ଦିନ ତାଙ୍କ ବିଗ୍ରହର ପୂଜାର୍ଚ୍ଚନା କରାଯାଏ । ମାତାଙ୍କର ଏହି ସ୍ୱରୂପ ପରମ ଶାନ୍ତି ଦାୟକ ଓ କଲ୍ୟାଣକାରୀ । ଏହାଙ୍କ ମସ୍ତକରେ ଘଣ୍ଟା ଆକୃତିର ଅର୍ଦ୍ଧଚନ୍ଦ୍ର ବିଭାଜିତ ହୋଇଥିବାରୁ ଏହାକୁ ଚନ୍ଦ୍ରଘଣ୍ଟା କୁହାଯାଏ । ଦେବୀଙ୍କ ଶରୀର ବର୍ଣ୍ଣ ସୁବର୍ଣ୍ଣ ପ୍ରାୟ । ଦେବୀ ଦଶଭୁଜା ଖଡ୍‌ଗ ଆଦି ଶସ୍ତ୍ର ଓ ବାଣ ଆଦି ଅସ୍ତ୍ର ବିଭୂଷିତ । ସେ ସିଂହ ବାହିନୀ, ସମର ମୁଦ୍ରାରେ ବିରାଜିତ । ତାଙ୍କ ଘଣ୍ଟାର ଭୟଙ୍କର ଧ୍ୱନିରେ ଅତ୍ୟାଚାରୀ ଦାନବକୁଳ ସର୍ବଦା ସନ୍ତ୍ରସ୍ତ ।

ନବରାତ୍ର ପୂଜାର ତୃତୀୟ ଦିବସ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ସେ ଦିନ ସାଧକର ମନ ମଣିପୁର ଚକ୍ରରେ ପ୍ରବେଶ କରେ । ଦେବୀଙ୍କ କୃପାରୁ ସାଧକକୁ ଅଲୌକିକ ବସ୍ତୁର ଦର୍ଶନ ମିଳେ । ଦିବ୍ୟ ସୁଗନ୍ଧ ଅନୁଭବ ହୁଏ । ବିବିଧ ପ୍ରକାର ଦିବ୍ୟଧ୍ୱନି ଶୁଣିଥାଏ । ସେ ଭକ୍ତମାନଙ୍କ ଦୁଃଖ ଦୂରୀଭୂତ କରିଥାଆନ୍ତି ।

ନିଜର ମନ, ବଚନ କର୍ମ ତଥା କାୟାକୁ ବିହିତ ବିଧି ବିଧାନ ଅନୁସାରେ ପବିତ୍ର କରି, ମାତା ଚନ୍ଦ୍ରଘଣ୍ଟାଙ୍କ ଶରଣାପନ୍ନ ହେବା ଉଚିତ । ତାଙ୍କ ଉପାସନା ଦ୍ୱାରା ଆମେ ସାଂସାରିକ କ୍ଲେଶରୁ ମୁକ୍ତ ହୋଇ ପରମ ପଦର ଅଧିକାରୀ ହୋଇପାରିବା । ତାଙ୍କ ଧ୍ୟାନ ଇହଲୋକ ଓ ପରଲୋକରେ ଆମର ପରମ କଲ୍ୟାଣ କରି ଆମକୁ ସଦ୍‌ଗତି ପ୍ରଦାନ କରିପାରିବ ।



# ୮୪. (୪) କୁଷ୍ମାଣ୍ଡା

ସୁରା ସଂପୂର୍ଣ୍ଣ କଳସଂ ରୁଧିରା ପ୍ଲୁତ ମେବଚ୍
ଦଧାନା ହସ୍ତ ପଦ୍ମାଭ୍ୟାଂ କୁଷ୍ମାଣ୍ଡା ଶୁଭଦାସ୍ତୁମେ ।

ମାତା ଦୁର୍ଗାଙ୍କର ଚତୁର୍ଥ ସ୍ୱରୂପର ନାମ କୁଷ୍ମାଣ୍ଡା । ନିଜର ମନ୍ଦହାସ ଦ୍ୱାରା ଅଣ୍ଡ ଅର୍ଥାତ୍ ବ୍ରହ୍ମାଣ୍ଡକୁ ଉତ୍ପନ୍ନ କରିଥିବା ହେତୁ ମାତାଙ୍କ କୁଷ୍ମାଣ୍ଡା କୁହାଯାଇଛି । ସୃଷ୍ଟିର ଆଦି କାଳରେ ଯେବେ ଅନ୍ଧକାର ପରିବ୍ୟାପ୍ତ ହୋଇଥିଲା, ସେତେବେଳେ ଦେବୀ ଈଷତ୍ ହାସ୍ୟ ଦ୍ୱାରା ବ୍ରହ୍ମାଣ୍ଡ ରଚନା କରିଥିଲେ । ଏହି ଦେବୀ ସୂର୍ଯ୍ୟ ମଣ୍ଡଳର ଅନ୍ତର୍ଲୋକ ନିବାସୀ । ଏହାଙ୍କ ଶରୀରର କାନ୍ତି ସୂର୍ଯ୍ୟସମ ଦେଦିପ୍ୟମାନ । ବ୍ରହ୍ମାଣ୍ଡର ସକଳ ବସ୍ତୁ ତଥା ପ୍ରାଣୀମାନଙ୍କର ତେଜ ହେଉଛି ଏହି ଦେବୀଙ୍କ ତେଜର ଛାୟାମାତ୍ର । ଦେବୀ ଅଷ୍ଟଭୁଜା । ତାଙ୍କ ସାତଟି ହାତରେ କ୍ରମଶଃ କମଣ୍ଡଳୁ, ଧନୁ, ବାଣ, ପଦ୍ମ, ଅମୃତକଳସ, ଚକ୍ର ଏବଂ ଗଦା ରହିଛି ଅଷ୍ଟମ ହସ୍ତରେ ସର୍ବସିଦ୍ଧି- ନିଧି ପ୍ରଦାୟକ ଜପମାଳା । ଦେବୀଙ୍କ ବାହନ ସିଂହ । ଦେବୀଙ୍କ ବଳି ହେଉଛି କୁଷ୍ମାଣ୍ଡ । ଏହି ହେତୁ ସେ କୁଷ୍ମାଣ୍ଡା ।

ନବରାତ୍ରର ଚତୁର୍ଥ ଦିନରେ କୁଷ୍ମାଣ୍ଡା ଦେବୀଙ୍କ ସ୍ୱରୂପକୁ ପୂଜା କରାଯାଏ । ସେଦିନ ସାଧକର ମନ 'ଅନାହତ' ଚକ୍ରରେ ସ୍ଥିତ ହୁଏ । ମାତା କୁଷ୍ମାଣ୍ଡାଙ୍କ ଉପାସନା କରୁଥିବା ସାଧକର ରୋଗ ଶୋକ ବିନାଶ ହୁଏ, ଆୟୁ, ଯଶ, ବଳ ଓ ସ୍ୱାସ୍ଥ୍ୟ ବୃଦ୍ଧି ହୁଏ । ଦେବୀ କୁଷ୍ମାଣ୍ଡା ଅତ୍ୟଳ୍ପ ସେବା ଓ ଭକ୍ତିରେ ପ୍ରସନ୍ନ ହୋଇଥାଆନ୍ତି । ନିର୍ମଳ ହୃଦୟରେ ମା'ଙ୍କର ଶରଣାପନ୍ନ ହେଲେ ସେ ଅତିସହଜରେ ପରମପଦ ପ୍ରାପ୍ତ ହୋଇପାରିବ । ନିଜର ଲୌକିକ ଓ ପାର ଲୌକିକ ଉନ୍ନତି ଚାହୁଁଥିବା ସାଧକ ଏହି ଦେବୀଙ୍କ ଉପାସନାରେ ତତ୍ପର ରହିବା ଆବଶ୍ୟକ ।



# ୮୫. (୫) ସ୍କନ୍ଦମାତା

ସିଂହାସନ ଗତା ନିତ୍ୟଂ ପଦ୍ମାଶ୍ରିତ କର ଦ୍ୱୟା
ଶୁଭଦାସ୍ତୁ ସଦା ଦେବୀ ସ୍କନ୍ଦମାତା ଯଶସ୍ୱିନୀ ।।

ମାତା ଦୁର୍ଗାଙ୍କର ପଞ୍ଚମ ସ୍ୱରୂପ ସ୍କନ୍ଦମାତା । କାର୍ତ୍ତିକେୟଙ୍କ ମାତା ହେବା କାରଣରୁ ମା' ଦୁର୍ଗାଙ୍କର ଏହି ପଞ୍ଚମ ସ୍ୱରୂପ ସ୍କନ୍ଦମାତା ନାମରେ ପ୍ରସିଦ୍ଧ । ନବରାତ୍ର ପୂଜାରେ ପଞ୍ଚମ ଦିବସରେ ଏହାଙ୍କ ଉପାସନା କରାଯାଏ । ସାଧକର ମନ ଏହି ଦିନରେ ବିଶୁଦ୍ଧ ଚକ୍ରରେ ଅବସ୍ଥାନ କରେ । ଭଗବାନ ସ୍କନ୍ଦଙ୍କ ବାଳକ ରୂପ ଦେବୀଙ୍କ କୋଳରେ ବସିଥାଆନ୍ତି । ସ୍କନ୍ଦମାତା ଚତୁର୍ଭୁଜା । ଦକ୍ଷିଣ ଉପର ହସ୍ତରେ ସେ ସ୍କନ୍ଦଙ୍କୁ କୋଳରେ ଧାରଣ କରିଥାଆନ୍ତି । ଦକ୍ଷିଣ ଅଧୋହସ୍ତରେ କମଳ ପୁଷ୍ପ ଧାରଣ କରିଛନ୍ତି । ବାମପଟ ଉପରହସ୍ତ ବରଦ ମୁଦ୍ରା ଏବଂ ଅଧୋହସ୍ତ ଉର୍ଦ୍ଧ୍ୱ ଉତ୍ତୋଳିତ ଏବଂ କମଳପୁଷ୍ପ ଶୋଭିତ । ଦେବୀ ଶୁଭ୍ର ବର୍ଣ୍ଣା ଏବଂ କମଳାସନା । ଦେବୀ ସିଂହ ବାହିନୀ । ଏହି ପଞ୍ଚମ ଦିବସରେ ସାଧକର ମନ 'ବିଶୁଦ୍ଧ' ଚକ୍ରରେ ଅବସ୍ଥିତ ହୋଇଥାଏ । ଫଳରେ ସାଂସାରିକ ଭୋଗ କାମନା ବୃତ୍ତି ଲୀନ ହୋଇ ଦେବୀଙ୍କ ପାଦ ପଦ୍ମରେ ତଲ୍ଲୀନ ହୋଇଥାଏ । ସାଧନା ପଥରେ ଚିତ୍ତ ଏକାଗ୍ରକରି ଅଗ୍ରସର ହୋଇଥାଏ ।

ସ୍କନ୍ଦମାତାଙ୍କ ଉପାସନାରେ ଭକ୍ତ ସାଧକର ସକଳ ଇଚ୍ଛା ପୂର୍ଣ୍ଣ ହୁଏ । ଇହ ଲୋକରେ ପରମ ଶାନ୍ତି ପାଇଥାଆନ୍ତି ଏବଂ ତାଙ୍କ ପାଇଁ ମୋକ୍ଷର ଦ୍ୱାର ସ୍ୱତଃ ଖୋଲିଯାଇଥାଏ । ଏହି ଘୋର ଭବସାଗରର ଦୁଃଖରୁ ମୁକ୍ତିପାଇ ମୋକ୍ଷ ମାର୍ଗର ସୁଲଭତା ପାଇଁ ଏହା ସର୍ବୋତ୍ତମ ।



# ୮୬. (୬) କାତ୍ୟାୟନୀ

ଚନ୍ଦ୍ରହାସୋଜ୍ୱଳକରା ଶାର୍ଦ୍ଦୁଳ ବର ବାହନା
କାତ୍ୟାୟନୀ ଶୁଭଂ ଦଦ୍ୟାଦ୍ଦେବା ଦାନବ ଘାତିନୀ ।।

ମାତା ଦୁର୍ଗାଙ୍କର ଷଷ୍ଠ ସ୍ୱରୂପର ନାମ କାତ୍ୟାୟନୀ । ପୌରାଣିକ ଆଖ୍ୟାନ ଆଧାରରେ (୧). ମହର୍ଷି କାତ୍ୟାୟନଙ୍କ କନ୍ୟା ଭାବେ ଜନ୍ମ ହୋଇଥିଲେ । (୨). ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଆଦି ଦେବଗଣଙ୍କ ସମ୍ମିଳିତ ଶକ୍ତି ଦେବୀ ଦୁର୍ଗାଙ୍କୁ ସର୍ବପ୍ରଥମ ଋଷି କତ୍ୟାୟନ ପୂଜା କରିଥିଲେ ଓ କାତ୍ୟାୟନୀ ନାମ ଧାରଣ କଲେ ।

ଏହାଙ୍କର ବର୍ଣ୍ଣ ସୁବର୍ଣ୍ଣ ପରି ଉଜ୍ୱଳ । ସେବୀ ଚତୁର୍ଭୁଜା, ଦକ୍ଷିଣ ଉପର ହାତରେ ଅଭୟ ଓ ତଳ ହାତରେ ବରଦ ମୁଦ୍ରା, ବାମ ଉପର ହସ୍ତରେ ତରବାରି ଏବଂ ତଳହାତରେ ପଦ୍ମଶୋଭା ପାଏ । ଦେବୀ ସିଂହ ବାହିନୀ ।

ନବରାତ୍ର ପୂଜାର ଷଷ୍ଠ ଦିବସରେ ମା'ଙ୍କର ଏହି ସ୍ୱରୂପର ପୂଜା କରାଯାଏ । ଉକ୍ତ ଦିନ ସାଧକର ମନ 'ଆଜ୍ଞା' ଚକ୍ରରେ ସ୍ଥିତ ହୁଏ । ସାଧକ ନିଜର ସର୍ବସ୍ୱ ଦେବୀଙ୍କୁ ସମର୍ପଣ କରିଦିଏ । ସଂପୂର୍ଣ୍ଣ ସମର୍ପଣରେ ଦେବୀଙ୍କର ଦର୍ଶନ ଲାଭ ସୁଲଭ ହୁଏ । ସାଧକ ଭକ୍ତ ଇହଲୋକରେ ଅଲୌକିକ ତେଜର ଅଧିକାରୀ ହୋଇଥାଏ । ତା'ର ରୋଗ, ଶୋକ, ସନ୍ତାପ ଭୟ ସର୍ବଥା ବିନଷ୍ଟ ହୋଇଥାଏ । ଜନ୍ମ ଜନ୍ମାନ୍ତର ପାପରାଶି ନାଶ କରିବା ନିମନ୍ତେ ମା'ଙ୍କ ଉପାସନା ସର୍ବୋତ୍ତମ । ତାଙ୍କର ଉପାସକ ନିରନ୍ତର ମାତୃ ସାନ୍ନିଧରେ ରହି ପରମ ପଦର ଅଧିକାରୀ ହୋଇଥାଏ । ସର୍ବତୋଭାବେ ମା'ଙ୍କର ଶରଣାଗତ ହୋଇ ତାଙ୍କ ପୂଜା ଉପାସନାରେ ତତ୍‌ପର ହେବା ଉଚିତ । ଭାଗବତର ଦଶମସ୍କନ୍ଧରେ ଗୋପୀମାନେ କାତ୍ୟାୟନୀ ବ୍ରତ ପାଳନ କରିଥିବା ବର୍ଣ୍ଣନା ରହିଛି । ତେଇଶେ କାତ୍ୟାୟନୀ ବ୍ରତ, ବସ୍ତ୍ର ହରଣର ଚରିତ । -(ଓ.ଭା. ୧୦ମ ସ୍କନ୍ଧ, ୨୩ ଅଧ୍ୟାୟ)



# ୮୭. (୭) କାଳରାତ୍ରି

ଏକବେଣୀ ଜପାକର୍ଣ୍ଣ ପୂରା ନଗ୍ନା ଖରାସ୍ଥିତା
ଲମ୍ବୋଷ୍ଠୀ କର୍ଣ୍ଣିକାକର୍ଣ୍ଣୀ ତୈଳାଭ୍ୟକ୍ତ ଶରୀରିଣୀ ।
ବାମ ପାଦୋଲ୍ଲସଲ୍ଲୋହଲତା କଣ୍ଟକ ଭୂଷଣା
ବର୍ଦ୍ଧନ ମୂର୍ଧ ଧ୍ୱଜା କୃଷ୍ଣା କାଳରାତ୍ରି ଭୟଙ୍କରୀ ॥

ମାତା ଦୁର୍ଗାଙ୍କର ସପ୍ତମଶକ୍ତି କାଳରାତ୍ରି ନାମରେ ଖ୍ୟାତ, ଏହାଙ୍କ ଶରୀର ଅନ୍ଧକାର ରାତ୍ରିପରି ଗାଢ଼କଳା । ଉନ୍ମୁକ୍ତ କେଶା, କଣ୍ଠରେ ବିଦ୍ୟୁତ୍‌ପରି ଉଜ୍ଜ୍ୱଳ ମାଳା ଝଟକୁଥାଏ । ମାତ୍ର ତ୍ରିନେତ୍ରା, ତାଙ୍କ ନେତ୍ରରୁ ଶ୍ୱାସ ପ୍ରଶ୍ୱାସରେ ଅଗ୍ନିଜ୍ୱାଳା ପ୍ରସରୁଥାଏ । ତାଙ୍କର ବାହନ ଗର୍ଦ୍ଦଭ । ସେ ଚତୁର୍ଭୁଜା ଦକ୍ଷିଣ ଉପର ହସ୍ତ ବରଦ ମୁଦ୍ରା ଏବଂ ତଳ ହାତ ଅଭୟ ମୁଦ୍ରା । ବାମ ଉପର ହସ୍ତରେ ଲୁହାକଣ୍ଟା ଏବଂ ତଳହାତରେ ଖଡ୍‌ଗ ଶୋଭାପାଏ । ସେ ସର୍ବଦା ଶୁଭଫଳ ପ୍ରଦାନ କରନ୍ତି ବୋଲି ତାଙ୍କର ଅନ୍ୟନାମ ଶୁଭଙ୍କରୀ ।

ନବରାତ୍ରର ସପ୍ତମ ଦିନରେ ମାତା କାଳରାତ୍ରିଙ୍କ ଉପାସନା ବିହିତ । ସେ ଦିନ ସାଧକର ମନ 'ସହସ୍ରାର' ଚକ୍ରରେ ସ୍ଥିତ ରହେ । ମାତା କାଳରାତ୍ରି ଦୁଷ୍ଟ ବିନାଶିନୀ । ତାଙ୍କ ସ୍ମରଣ ମାତ୍ରେ ଦାନବ, ଦୈତ୍ୟ, ରାକ୍ଷସ, ଭୂତ, ପ୍ରେତ ଆଦି ସମସ୍ତେ ଦୂର ହୋଇଯାଆନ୍ତି । ମା' ସକଳ ଗ୍ରହଦୋଷ ନିବାରଣ କରନ୍ତି । ତାଙ୍କ ଉପାସକକୁ ଅଗ୍ନି ଭୟ, ଜଳ ଭୟ, ଜନ୍ତୁ ଭୟ, ଶତ୍ରୁ ଭୟ ଆଦି କୌଣସି ଭୟ ରହେନାହିଁ । ତାଙ୍କ ଉପାସନାରୁ ମିଳୁଥିବା ଶୁଭ ଅଗଣନୀୟ । ଆମେ ତାଙ୍କ ସ୍ମରଣ ଧ୍ୟାନ ଓ ପୂଜନ କରିବା ଆବଶ୍ୟକ ।



# ୮୮. (୮) ମହାଗୌରୀ

ଶ୍ୱେତବୃଷେ ସମାରୂଢ଼ା ଶ୍ୱେତାମ୍ବର ଧରା ଶୁଚିଃ
ମହାଗୌରୀ ଶୁଭଂ ଦଦ୍ୟାନ୍ ମହାଦେବ ପ୍ରମୋଦଦା ।

ମାତା ଦୁର୍ଗାଙ୍କର ଅଷ୍ଟମ ଶକ୍ତିର ନାମ ମହାଗୌରୀ । ତାଙ୍କର ବର୍ଣ୍ଣ ଗୌର । ମା'ଙ୍କ ଗୌରବର୍ଣ୍ଣର ତୁଳନା ଶଙ୍ଖ, କୁନ୍ଦପୁଷ୍ପ, ସହିତ କରାଯାଏ । ତାଙ୍କର ଆୟୁ ଆଠବର୍ଷର ଧରାଯାଏ । ତାଙ୍କର ବସ୍ତ୍ର ଆଭୂଷଣ ମଧ୍ୟ ଶ୍ୱେତ । ଦେବୀ ଚତୁର୍ଭୁଜା ଏବଂ ବୃଷବାହିନୀ । ତାଙ୍କ ଦକ୍ଷିଣ ଉପର ହସ୍ତରେ ଅଭୟ ମୁଦ୍ରା, ତଳହସ୍ତରେ ତ୍ରିଶୂଳ । ବାମ ଉପର ହସ୍ତରେ ଡମ୍ବରୁ ଏବଂ ତଳହସ୍ତରେ ବରଦମୁଦ୍ରା ଶୋଭିତ । ଦେବୀ ଶାନ୍ତ ଏବଂ କମନୀୟ ।

ପାର୍ବତୀ ରୂପରେ ଶିବଙ୍କୁ ପତିରୂପେ ପାଇବା ପାଇଁ କଠୋର ତପସ୍ୟା ଆଚରଣ କରିଥିଲେ । ତାଙ୍କ ପ୍ରତିଜ୍ଞା ଥିଲା- "ବ୍ରିୟେଽହଂ ବରଦଂଶମ୍ଭୁ ନାନ୍ୟଦେବଂ ମହେଶ୍ୱରାତ୍" (ନାରଦ ପଞ୍ଚରାତ୍ର) । ସେହି କଠୋର ତପସ୍ୟାରେ ତାଙ୍କ ଶରୀର କଳାକାଠ ପଡ଼ିଯାଇଥିଲା । ତାଙ୍କ ତପସ୍ୟାରେ ପ୍ରୀତ ହୋଇ ଭଗବାନ ଶିବ ତାଙ୍କ ଶରୀରକୁ ପବିତ୍ର ଗଂଗାଜଳରେ ଧୋଇ ଦେଲେ । ସେତେବେଳେ ସେ ଅତ୍ୟନ୍ତ କାନ୍ତିମାନ୍ ଗୌର ହୋଇଗଲେ । ସେହିଦିନୁ ତାଙ୍କ ନାମ ଗୌରୀ ହୋଇଗଲା, ମହାଗୌରୀ ।

ଦୁର୍ଗା ପୂଜାର ଅଷ୍ଟମ ଦିନ ମହାଗୌରୀଙ୍କୁ ଉପାସନା କରିବାର ବିଧାନ ରହିଛି । ମା'ଙ୍କର ଶକ୍ତି ଅମୋଘ ଓ ସଦ୍ୟ ଫଳ ଦାୟିନୀ । ମାତା ଗୌରୀଙ୍କ ଧ୍ୟାନ, ସ୍ମରଣ, ପୂଜନ, ଆରାଧନା ଭକ୍ତମାନଙ୍କ ସର୍ବବିଧ କଲ୍ୟାଣକାରୀ । ତାଙ୍କ କୃପା ହେଲେ ଅଲୌକିକ ଶକ୍ତି ପ୍ରାପ୍ତ ହୋଇଥାଏ । ତାଙ୍କ ଉପାସନାରେ ଆର୍ତ୍ତଜନର ଅସମ୍ଭବ କାର୍ଯ୍ୟ ମଧ୍ୟ ସମ୍ଭବ ହୋଇଥାଏ । ପୁରାଣରେ ଦେବୀଙ୍କର ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳିଥାଏ । ସେ ମନୁଷ୍ୟର ବୃତ୍ତିଗୁଡ଼ିକୁ ସଦ୍‌ଦିଗରେ ପ୍ରେରିତ କରି ଅସତ୍‌ର ବିନାଶ କରନ୍ତି ।



# ୮୯. (୯) ସିଦ୍ଧିଦାତ୍ରୀ

ସିଦ୍ଧ ଗନ୍ଧର୍ବ ଯକ୍ଷା ଦ୍ୟୈର ସୁରୈ ରମରୈ ରପି
ସେବ୍ୟମାନା ସଦା ଭୂୟାତ୍ ସିଦ୍ଧିଦା ସିଦ୍ଧିଦାୟିନୀ ॥

ମାତା ଦୁର୍ଗାଙ୍କର ନବମ ଶକ୍ତିର ନାମ ସିଦ୍ଧିଦାତ୍ରୀ । ଏହି ଦେବୀ ସକଳ ପ୍ରକାର ସିଦ୍ଧି ପ୍ରଦାନ କରନ୍ତି । ମାର୍କଣ୍ଡେୟ ପୁରାଣରେ ସିଦ୍ଧି ଆଠପ୍ରକାର । ଯଥା- ଅଣିମା, ଲଘିମା, ମହିମା, ଗରିମା, ପ୍ରାପ୍ତି, ପ୍ରାକାମ୍ୟ, ଈଶିତ୍ୱ ଏବଂ ବଶିତ୍ୱ । ବ୍ରହ୍ମବୈବର୍ତ୍ତ ପୁରାଣ ଶ୍ରୀକୃଷ୍ଣ ଜନ୍ମ ଖଣ୍ଡରେ ସିଦ୍ଧି ଅଠର ପ୍ରକାର । ୧- ଅଣିମା, ୨- ଲଘିମା, ୩- ପ୍ରାପ୍ତି, ୪- ପ୍ରାକାମ୍ୟ, ୫- ମହିମା, ୬- ଈଶିତ୍ୱ, ବଶିତ୍ୱ, ୭- ସର୍ବକାମ ବସାୟିତା, ୮- ସର୍ବଜ୍ଞତ୍ୱ, ୯- ଦୂରଶ୍ରବଣ, ୧୦- ପରକାୟ ପ୍ରବେଶନ, ୧୧- ବାକ୍ ସିଦ୍ଧି, ୧୨- କଳ୍ପ ବୃକ୍ଷତ୍ୱ, ୧୩- ସୃଷ୍ଟି, ୧୪- ସଂହାର ସାମର୍ଥ୍ୟ, ୧୫- ଅମରତ୍ୱ, ୧୬- ସର୍ବନ୍ୟାୟକତ୍ୱ, ୧୭- ଭାବନା, ୧୮- ସିଦ୍ଧି ।

ମା' ସିଦ୍ଧିଦାତ୍ରୀ ଚତୁର୍ଭୁଜା, ସିଂହ ବାହିନୀ ଏବଂ ପଦ୍ମାସୀନା । ସେ ଦକ୍ଷିଣ ପଶ୍ଚାତ୍ ହସ୍ତରେ ଗଦା, ଅଧୋହସ୍ତରେ ଚକ୍ର ଏବଂ ବାମ ଉର୍ଦ୍ଧ୍ୱ ହସ୍ତରେ ପଦ୍ମ ଏବଂ ଅଧୋହସ୍ତରେ ଶଙ୍ଖ ଧାରଣ କରିଅଛନ୍ତି । ନବରାତ୍ର ପୂଜାରେ ନବମ ଦିନ ତାଙ୍କୁ ପୂଜା କରାଯାଏ । ଶାସ୍ତ୍ରୀୟ ବିଧାନ ସହ ନିଷ୍ଠାପର ପୂଜକକୁ ସିଦ୍ଧି ପ୍ରଦାନ କରିଥାଆନ୍ତି ।

ନବ ଦୁର୍ଗାଙ୍କ ମଧ୍ୟରେ ସିଦ୍ଧିଦାତ୍ରୀ ହେଉଛନ୍ତି ଶେଷଦୁର୍ଗା, ଏହି ସିଦ୍ଧିଦାତ୍ରୀ ମାତାଙ୍କ ଉପାସନାରେ ଭକ୍ତର ଲୌକିକ ପାରଲୌକିକ ସକଳ କାମନା ପୂର୍ତ୍ତି ହୋଇଥାଏ । ମାତା ଭଗବତୀଙ୍କ କୃପାରୁ ସାଧକ ସକଳ ସାଂସାରିକ ଇଚ୍ଛା, ଆବଶ୍ୟକତାରୁ ଉପରକୁ ଉଠି ମାନସିକ ରୂପରେ ଦିବ୍ୟଲୋକରେ ବିଚରଣ କରନ୍ତି ମା'ଙ୍କର କୃପା- ରସାମୃତ ପାନକରି ବିଷୟ- ବାସନା ଶୂନ୍ୟ ହୋଇଯାଆନ୍ତି ।

ମାତାଙ୍କର ସ୍ମରଣ, ଧ୍ୟାନ ଓ ପୂଜନ ଆମକୁ ଏହି ସଂସାରର ଅସାରତା ବୋଧ କରାଇ ବାସ୍ତବ ପରମଶାନ୍ତି, ଆନନ୍ଦ ଦାୟକ ଅମୃତପଦ ଆଡ଼କୁ ଘେନିଯିବ ।



# ୯୦. ଆୟୁ ବର୍ଦ୍ଧନକାରୀ ସାଧନ

ଆଚାର୍ଯ୍ୟ ସୁଶ୍ରୁତ ଆୟୁବର୍ଦ୍ଧନ କାରୀ ଉପାୟମାନଙ୍କ ମଧ୍ୟରେ ସଦାଚାର ସମ୍ବନ୍ଧି ବିଧାନ ସୂଚାଇଛନ୍ତି-

ଆୟୁଷ୍ୟଂ ଭୋଜନଂ ଜୀର୍ଣ୍ଣେ ବେଗାନାଂ ଚାବିଧାରଣମ୍
ବ୍ରହ୍ମଚର୍ଯ୍ୟ ମହିଂସାଚ୍ ସାହସାନାଂ ଚ୍ ବର୍ଜନମ୍ ।
(ସୁଶ୍ରୁତ ସଂହିତା, ଚିକିତ୍ସାସ୍ଥାନ- ୨୮/୨୮)

ପୂର୍ବରୁ କରାଯାଇଥିବା ଭୋଜନ ଜୀର୍ଣ୍ଣ ହେବା ପରେ ଭୋଜନ କରିବା, ମଳମୂତ୍ରାଦିର ବେଗଧାରଣ ନକରିବା । ବ୍ରହ୍ମଚର୍ଯ୍ୟ (ଇନ୍ଦ୍ରିୟ ସଂଜମ), ଅହିଂସା (ଅନ୍ୟ ପ୍ରାଣୀଙ୍କୁ ଶାରୀରିକ ବା ମାନସିକ କଷ୍ଟ ନପହଞ୍ଚାଇବା) ଏବଂ ଦୁଃସାହସ (ବିଚାର ବିନା କରିବା ଏବଂ ନିଜ କ୍ଷମତାରୁ ଅଧିକ କାର୍ଯ୍ୟ କରିବା)ର ପରିତ୍ୟାଗ- ଯେ ସାଧନ ଆୟୁ ବୃଦ୍ଧି କାରକ ।

ଅହିଂସାର ପାଳନ ଆୟୁ ବର୍ଦ୍ଧନକାରୀ ଉପାୟମାନଙ୍କ ମଧ୍ୟରେ ଶ୍ରେଷ୍ଠ । 'ତତ୍ର ହିଂସା ପ୍ରାଣିନାଂ ପ୍ରାଣ ବର୍ଦ୍ଧନା ନାମୁତ୍ କୃଷ୍ଟ ତମମ୍' (ଚରକସଂହିତା ସୂତ୍ର ୩୦/୧୫) ଅହିଂସା ପାଳନ କରିଥିବା ବ୍ୟକ୍ତି, ଏହା ପ୍ରୟାସ କରିବା ଉଚିତ ଯେ ତାହାର କାର୍ଯ୍ୟରେ ଅନ୍ୟକୁ ଶାରୀରିକ ବା ମାନସିକ କଷ୍ଟ ନହେଉ । ଏହି ପ୍ରକାର ଆଚରଣରେ ବ୍ୟକ୍ତି ଅନାବଶ୍ୟକ ଉଦ୍‌ବେଗରୁ ରକ୍ଷାପାଏ । ଅନ୍ୟର ଛିଦ୍ରାନ୍ୱେଷଣ ବା ଅହିତ କରିବା ହେତୁ କରାଯାଉଥିବା ବ୍ୟର୍ଥ ଚିନ୍ତାରୁ ମଧ୍ୟ ମୁକ୍ତ ରହେ । ଏହି ଧରଣର ବ୍ୟକ୍ତି କ୍ଷମାଶୀଳ ହୋଇଥାଏ । କ୍ଷମା କ୍ରୋଧରୁ ଶାନ୍ତ କରିବାର ଶ୍ରେଷ୍ଠ ଉପାୟ । କ୍ଷମା କ୍ରୋଧକୁ, ଜ୍ୱଳନକୁ ନଷ୍ଟ କରିଦିଏ । 'ହନ୍ତିନିତ୍ୟ କ୍ଷମା କ୍ରୋଧମ୍' ।

ସମସ୍ତ ଉଦ୍‌ବେଗକୁ ନିୟନ୍ତ୍ରଣ କରି ଶାନ୍ତଚିତ୍ତ ରହିବା ପଥ୍ୟ ମଧ୍ୟରେ ଶ୍ରେଷ୍ଠ । ପଥ୍ୟ ତାହାକୁ କୁହାଯାଏ ଯାହା ସ୍ୱାସ୍ଥ୍ୟର ହିତକର ଏବଂ ଚିକିତ୍ସାର ସହଯୋଗୀ । ମନ ଉଦ୍‌ବେଗ ରହିତ ହେବା ଚିକିତ୍ସାର କାର୍ମିକତାରେ ବୃଦ୍ଧି କରିଥାଏ । ପ୍ରସନ୍ନ ଚିତ୍ତ ରହିବା  ନିଜେ ଏକ ଅମୂଲ୍ୟ ଔଷଧ । ସଦାଚାରୀ ବ୍ୟକ୍ତି ସଦୈବ ପ୍ରସନ୍ନ ରହିଥାଏ । ଯଦ୍ୱାରା ଅନେକ ପ୍ରକାର ଶାରୀରିକ ଓ ମାନସିକ ବ୍ୟାଧିରୁ ରକ୍ଷା ପାଇଥାଏ । ଆଚାର୍ଯ୍ୟ, ହର୍ଷ ଏବଂ ନିବୃତ୍ତକୁ ଶରୀର ପୁଷ୍ଟିକର ଉପାୟ ମଧ୍ୟରେ ଶ୍ରେଷ୍ଠତମ ସ୍ଥାନ ଦେଇଛନ୍ତି । (ଚରକ ସଂହିତା, ସୂତ୍ର ସ୍ଥାନ- ୨୫/୪୦) ।



# ୯୧. ପିବତ ଭାଗବତଂ ରସମାଳୟମ୍

ଏକଦା ଭଗବାନ୍ ବ୍ୟାସଦେବ ପ୍ରାତଃକୃତ୍ୟ ସଂପନ୍ନ କରି ସରସ୍ୱତୀ ନଦୀତଟରେ ବସିଥିଲେ । ଆଜି ତାଙ୍କ ହୃଦୟରେ ପ୍ରଫୁଲ୍ଲତା ନଥିଲା । ହୃଦୟର ଏକ ନିଭୃତ ସ୍ଥାନ ଯେପରି ଊଣା ହୋଇଯାଇଥିଲା । ମନ ମଧ୍ୟରେ ଭାବୁଛନ୍ତି- ଜନହିତ ପାଇଁ ମୁଁ ବେଦର ବିଭାଜନ କଲି, ଏ ଯାବତ୍ ସତର ପୁରାଣ ଏବଂ ମହାଭାରତ ମହାକାବ୍ୟ ରଚନା କଲି । ପୁନଃ ମୋ' ମନ ଅସନ୍ତୁଷ୍ଟ ହେଉଛି କାହିଁକି ? ଏ ଆକୁଳତା କାହିଁକି ହେଉଛି ?

ପୁଣି ମନ ମଧ୍ୟରେ ବିଚାର କରୁଛନ୍ତି- ବ୍ରହ୍ମ ହେଉଛନ୍ତି ରସମୟ, ଅତଃ ରସ ରୂପରେ ତାଙ୍କ ବର୍ଣ୍ଣନା ଅପେକ୍ଷିତ । ଠିକ୍ ଏହି ସମୟରେ ମହାଭାଗବତ ଶ୍ରୀ ନାରଦ ସେଠାରେ ଆସି ପହଞ୍ଚିଗଲେ । ବ୍ୟାସଦେବ ତୁରନ୍ତ ଠିଆ ହୋଇଗଲେ । ଦେବର୍ଷିଙ୍କୁ ବିଧିବତ୍ ପୂଜା କଲେ । ଦେବର୍ଷି ପଚାରିଲେ- ଆପଣ ଅକୃତାର୍ଥ ପୁରୁଷ ପରି ଖିନ୍ନ କାହିଁକି ? ବ୍ୟାସଦେବ କହିଲେ- ପ୍ରାୟତଃ ମୋ'ର ମନ ସନ୍ତୁଷ୍ଟ ହେଉନାହିଁ । ମୋ' ଭିତରେ ଯେଉଁ ଊଣା ରହିଯାଇଛି କୃପାକରି ସୂଚାଇ ଦିଅନ୍ତୁ ।

ତହୁଁ ନାରଦ କହିଲେ- ଆପଣ ଧର୍ମ ଆଦି ପୁରୁଷାର୍ଥର ଯେପରି ନିରୂପଣ କରିଅଛନ୍ତି, ସେହିପରି ନିରୂପଣ ରସ ରୂପ ବ୍ରହ୍ମଙ୍କର କରି ନାହାଁନ୍ତି । ରସର ଉଲ୍ଲାସ ପାଇଁ ବ୍ରହ୍ମର ସମୟ ଲୀଳା କରିଥାଏ । ଆପଣ ତାଙ୍କର ରସମୟ ଭାବର ନିରୂପଣ କରନ୍ତୁ । ଏହାଦ୍ୱାରା ଆପଣଙ୍କ ହୃଦୟକୁ ସନ୍ତୋଷ ପ୍ରାପ୍ତ ହେବ ।

ଏହାପରେ ଭଗବାନ୍ ବ୍ୟାସଦେବ ଯେଉଁ ଗ୍ରନ୍ଥର ରଚନା କଲେ ତାହାର ନାମ ଶ୍ରୀମଦ୍ ଭାଗବତ । ପୁଷ୍ପିକାରେ ଭଗବାନ ବ୍ୟାସଦେବ ଏହାକୁ 'ପରମହଂସ ସଂହିତା' କହିଅଛନ୍ତି । ଶ୍ରୀମଦ୍ ଭାଗବତ ଭଗବାନଙ୍କ ସ୍ୱରୂପ, ଭଗବାନ ହେଉଛନ୍ତି ରସ, ଭାଗବତ ମଧ୍ୟ ରସ ।



# ୯୨. ଭଜନ ବିନା ବ୍ୟର୍ଥରେ ଦିବସ ଗଲା

ମନୁଷ୍ୟର ଚିତ୍ତ ଏକ ଦର୍ପଣ ତୁଲ୍ୟ । ଏହା ଉପରେ ବାସନାର ମଳ ଜମିଯାଉଛି । ସେହି ଦର୍ପଣକୁ ମାଜି ସ୍ୱଚ୍ଛ କରିବାର ସାଧନ ଭଗବନ୍ନାମ ସଂକୀର୍ତ୍ତନ । ଏହି ସଂସାର ରୂପୀ ମହାଦାବାଗ୍ନିରେ ପଡ଼ିଥିବା ପ୍ରାଣୀ ଜନ୍ମ- ମୃତ୍ୟୁ ତଥା ଦୈହିକ, ଦୈବିକ, ଭୌତିକ ତାପରେ ଦଗ୍ଧିଭୂତ ହେଉଅଛି । ଏହି ଦାବାଗ୍ନିକୁ ହରିନାମ ସଂକୀର୍ତ୍ତନ ନିର୍ବାପିତ କରିଥାଏ । କଲ୍ୟାଣ- କୁମୁଦିନୀର ବିକାଶ ପାଇଁ ଏବଂ ଆନନ୍ଦ ସମୁଦ୍ରର ବୃଦ୍ଧି ପାଇଁ ଭଗବନ୍ନାମ ସଂକୀର୍ତ୍ତନ ଚନ୍ଦ୍ରିକା । ଭଗବନ୍ନାମ ପଦେପଦେ ଅମୃଅତର ଆସ୍ୱାଦନ କରିଥାଏ ତଥା ଏଥିରେ ସଂପୂର୍ଣ୍ଣ ଚିତ୍ତ ନିମଜ୍ଜିତ ହୋଇଥାଏ । ତଲ୍ଲୀନ ହୋଇଯାଏ, ଏହିପରି ଶ୍ରୀକୃଷ୍ଣ ନାମ ସଂକୀର୍ତ୍ତନ ଜୀବନରେ ବ୍ୟାପ୍ତ ହୋଇଯାଏ ।

ଭଗବନ୍ନାମରେ ପାପକୁ ନଷ୍ଟ କରିବାର ଯେତେ ଶକ୍ତି ରହିଛି, ସଂସାରରେ ପାପୀ ମିଶିକରି ମଧ୍ୟ ସେତିକି ପାପ କରିନପାରନ୍ତି । ଏଣୁ ସନ୍ଥମାନେ ନାମ ଜପ ଉପରେ ବିଶେଷ ଗୁରୁତ୍ୱ ଦେଇ ଅଛନ୍ତି, କିନ୍ତୁ ନାମଜପ ସହିତ କିଛି ନିୟମ ପାଳନର ନିର୍ଦ୍ଦେଶ ମଧ୍ୟ ଦେଇଛନ୍ତି । ନାମଜପ ସହିତ ନାମାପରାଧରୁ କ୍ଷାନ୍ତ ରହିବା ପ୍ରୟୋଜନ । ସନ୍ଥଗଣ ଏହି ନାମାପରାଧର ସଂଖ୍ୟା ଦଶ ସୂଚାଇଛନ୍ତି । 'ହରେର୍ନାମାପରାଧାଦଶ' । ୧. ସତ୍ ପୁରୁଷଙ୍କ ନିନ୍ଦା, ୨. ଅସତ୍ ପୁରୁଷଙ୍କ ନାମ ମହାତ୍ମ୍ୟ ଶୁଣାଇବା, ୩. ଶିବ ଏବଂ ବିଷ୍ଣୁଙ୍କ ମଧ୍ୟରେ ଭେଦବୁଦ୍ଧି, ୪. ଶ୍ରୁତି ନିନ୍ଦା, ୫. ଶାସ୍ତ୍ର ନିନ୍ଦା, ୬. ଆଚାର୍ଯ୍ୟଙ୍କ ବାକ୍ୟରେ ଅବିଶ୍ୱାସ, ୭. ଭଗବନ୍ନାମରେ ଅର୍ଥାବାଦ, ୮. ଭଗବନ୍ନାମର ଆଶ୍ରୟ ନେଇ ପାପକର୍ମରେ ଲିପ୍ତ ହେବା, ୯. ଶାସ୍ତ୍ର ନିଷିଦ୍ଧ କର୍ମର ଆଚରଣ କରିବା, ୧୦. ଧର୍ମ, ବ୍ରତ, ଜପ ଆଦି ସହିତ ଭଗନ୍ନାମର ତୁଳନା କରିବା- ଏ ଦଶ ନାମାପରାଧ ଶଙ୍କର ଏବଂ ବିଷ୍ଣୁଙ୍କ ନାମଜପ ସମ୍ବନ୍ଧରେ କୁହାଯାଇଛି ।



# ୯୩. ସମାନ ମହତ୍ତ୍ୱ

ଯେପରି ଦେଖିବାପାଇଁ ଦୁଇ ଚକ୍ଷୁ, ଶୁଣିବା ପାଇଁ ଦୁଇ କାନ, ଚାଲିବା ପାଇଁ ଦୁଇ ପାଦର ସମାନ ମହତ୍ତ୍ୱ ରହିଛି, ସେହିପରି ସାଧନାଦୃଷ୍ଟିରୁ ଜୀବନରେ ଅନୁକୂଳତା ତଥା ପ୍ରତିକୂଳତା ସମାନ ମହତ୍ତ୍ୱ ରହିଛି । ଅନୁକୂଳତାର ସଦୁପଯୋଗରେ ଦୁଃଖ, ଚିନ୍ତା, ଭୟ, ଉଦ୍‌ବେଗ ସଦୈବ ସର୍ବାଂଶରେ ତୁଟିଯାଏ । ପରମଶାନ୍ତି, ଜୀବନ୍ମୁକ୍ତି, ଭଗବତ୍ ଭକ୍ତି, ଭଗବାନ ମିଳିଯାଇଥାଆନ୍ତି; ଯାହା ଆମ ଜୀବନର ଆଧାରଭୂତ ଲକ୍ଷ୍ୟ । ପ୍ରତିକୂଳତାର ସଦୁପଯୋଗରେ ମଧ୍ୟ ଦୁଃଖ, ଚିନ୍ତା, ଭୟ, ଉଦ୍‌ବେଗ ସଦୈବ ସର୍ବାଂଶରେ ତୁଟିଯାଏ, ପରମଶାନ୍ତି, ଜୀବନ୍ମୁକ୍ତି, ଭଗବତ୍ ଭକ୍ତି, ଭଗବାନ ମିଳିଯାଆନ୍ତି । ଅନୁକୂଳତାର ଭୋଗରେ ମନୁଷ୍ୟ ନାଶବାନ୍ ସଂସାରର କ୍ଷଣିକ ସୁଖରେ ମୋହିତ ହୋଇଯାଏ । ସେହି ସୁଖକୁ ଧରି ରଖିବା ତଥା ବଢ଼ାଇବାରେ ସଂପୂର୍ଣ୍ଣ ଅମୂଲ୍ୟ ମାନବ ଜୀବନ ବ୍ୟୟ କରିଦିଏ । ଅନ୍ତିମ ସମୟରେ ସେହି ସୁଖକୁ ଛାଡ଼ିବାରେ ତାକୁ ଭୀଷଣ ଦୁଃଖ ହୋଇଥାଏ । ସେହି ସୁଖ- ଚିନ୍ତନରେ ମରିବା କାରଣରୁ ମରିବାପରେ ତାହାର ସଦ୍‌ଗତି ହୁଏନାହିଁ । ପ୍ରତିକୂଳତା ଭୋଗରେ ମଧ୍ୟ ଏହି ନାଶବାନ୍ ସଂସାରର କ୍ଷଣିକ ଦୁଃଖରେ ମୁହ୍ୟମାନ ହୋଇଥାଏ । ସେହି ଦୁଃଖରୁ ରକ୍ଷା ପାଇବା ତଥା ସୁଖକୁ ପୁନଃ ପ୍ରାପ୍ତି କରିବାରେ ନିଜର ଅମୂଲ୍ୟ ମାନବ ଜୀବନ ବରବାଦ କରିଦିଏ । ଅନ୍ତିମ ସମୟରେ ଦୁଃଖ ଚିନ୍ତାରେ ମରିଥାଏ । ଏଣୁ ମରିବା ପରେ ସଦ୍‌ଗତି ହୁଏନାହିଁ । ମାନବ ଜୀବନରେ ଅନୁକୂଳତା ଏବଂ ପ୍ରତିକୂଳତାର କୌଣସି ମହତ୍ତ୍ୱ ନାହିଁ । ମହତ୍ତ୍ୱ ହେଉଛି ଏହାର ସଦୁପଯୋଗରେ । ଏଣୁ ସେହି ବ୍ୟକ୍ତି ସୌଭାଗ୍ୟଶାଳୀ ନୁହେଁ, ଯାହା ଜୀବନରେ ଅନୁକୂଳତା ଅଛି ଏବଂ ସେହି ବ୍ୟକ୍ତି ଦୁର୍ଭାଗା ନୁହେଁ ଯାହା ଜୀବନରେ ପ୍ରତିକୂଳତା ରହିଛି । ଯେ ଅନୁକୂଳତା ତଥା ପ୍ରତିକୂଳତାର ସଦୁପଯୋଗ କରେ ଏବଂ ଦୁର୍ଭାଗା ସେ ଯେ ଏହାର ଭୋଗ କରେ ।



# ୯୪. ଗୃହସ୍ଥାଶ୍ରମ

ଭାରତୀୟ ପରଂପରାରେ ମନୁଷ୍ୟର ବ୍ୟକ୍ତିଗତ ନିଃଶ୍ରେୟ ସିଦ୍ଧି ତଥା ସାମାଜିକ ଅଭ୍ୟୁଦୟ ଏହି ଦୁଇ ଧର୍ମତତ୍ତ୍ୱର ଏକତ୍ୱ କରି ଚାରିବର୍ଣ୍ଣ ତୁଲ୍ୟ ଚାରି ଆଶ୍ରମର ବ୍ୟବସ୍ଥା କରାଯାଇଅଛି । ତନ୍ମଧ୍ୟରେ ଗୃହସ୍ଥାଶ୍ରମ ଶ୍ରେଷ୍ଠ ଏବଂ ସବୁର ଜୀବାନୁଭୂତ ହେବା ହେତୁ ଜ୍ୟେଷ୍ଠ ଆଶ୍ରମ ରୂପେ ସମାଦୃତ ହୋଇଅଛି ।

ଆଶ୍ରମ ଦ୍ୱିଜାତି ପାଇଁ ଆତ୍ମକଲ୍ୟାଣ ପଥରେ ଏପରି ଏକ ବିଶ୍ରାମସ୍ଥଳ, ଯେଉଁଠାରେ ତାକୁ ନିୟମତଃ ଏକ ନିର୍ଦ୍ଦିଷ୍ଟ ଅବଧି ପର୍ଯ୍ୟନ୍ତ ରହିବାକୁ ପଡ଼ିବ । ଏଣୁ ଏଥିରେ ପରିବର୍ତ୍ତନ ହେତୁ ଜନ୍ମାନ୍ତର ବ୍ୟବସ୍ଥା ଆବଶ୍ୟକ ମାନି ନେଇ ହେବନାହିଁ । ଏବଂ ଅନ୍ୟ ଆଶ୍ରମ ପାଇଁ ଯୋଗ୍ୟତାର ଅର୍ଜନ ପୂର୍ବାଶ୍ରମର ଅବଧିରେ ହିଁ ଅନୁଷ୍ଠେୟ ହୋଇଥାଏ । ହେଉ ! ଏହି ମନୋଭାବକୁ ବିକଶିତ ସ୍ତରର ଅନୁରୂପ ଭାବନା, କ୍ରିୟା ଏବଂ ଜ୍ଞାନର ସାଧନରେ ସମୁଚିତ ବିନିଯୋଗ ହୋଇଥାଏ ।

ତାତ୍ପର୍ଯ୍ୟ ହେଉଛି ଯଦି ବ୍ରାହ୍ମଣ, କ୍ଷତ୍ରୀୟ, ବୈଶ୍ୟ, ଶୂଦ୍ର ଭାବେ କ୍ରମଶଃ ବିଶୁଦ୍ଧ ସତ୍ୱ, ବିଶୁଦ୍ଧ ରଜସ, ରଜ- ତମ ସମ୍ମିଶ୍ରିତ ଏବଂ ବିଶୁଦ୍ଧ ତମସ ଗୁଣାତ୍ମକ ବିଭାଜନ ବିଭିନ୍ନ ରୁଚି ଏବଂ ଯୋଗ୍ୟତା ସଂପନ୍ନ ବିସ୍ତୃତ ମାନବ ସମୂହକୁ ନିଜର ସ୍ୱାଭାବିକ ପ୍ରବୃତ୍ତି ଏବଂ ଐକାନ୍ତିକ ନିବୃତ୍ତିକୁ ଶାସ୍ତ୍ରୀୟ ସିଦ୍ଧାନ୍ତରେ ଦୀକ୍ଷିତ କରାଯାଏ ତେବେ ବ୍ରହ୍ମଚର୍ଯ୍ୟ, ଗୃହସ୍ଥ, ବାନପ୍ରସ୍ଥ ଏବଂ ସନ୍ନ୍ୟାସ ଏହି ଚାରି ଆଶ୍ରମ ମନୁଷ୍ୟର ପ୍ରବୃତ୍ତି ଏବଂ ନିବୃତ୍ତି ବିଶୁଦ୍ଧିକରଣ ହେତୁ ଏହାର ଏକ କଳାତ୍ମକ ସୀମା ନିର୍ଦ୍ଧାରିତ କରି ଦିଆଯାଇଛି, ଯଦ୍ୱାରା ବ୍ୟକ୍ତି ପ୍ରେୟ ଏବଂ ଶ୍ରେୟ ଦୁଇ ଦିଗରେ କୃତକାର୍ଯ୍ୟ ହୋଇପାରିବ ।



# ୯୫. ଚିକିତ୍ସକଙ୍କ ସେବାଚର୍ଯ୍ୟା

ପ୍ରାଚୀନ କାଳରେ 'ବିଦ୍‌ଜ୍ଞାନେ' ଧାତ୍ୱର୍ଥ ଅନୁସାରେ ବୈଦ୍ୟ ପଦବୀ ପ୍ରାପ୍ତ କରିବା ପରେ ଦୀର୍ଘକାଳ ପର୍ଯ୍ୟନ୍ତ ମନନ କରି ସମଗ୍ର ଅଧ୍ୟୟନ ଓ ଅଧ୍ୟାପନ କାର୍ଯ୍ୟ କରିବା ଉତ୍ତାରୁ ଆଚାର୍ଯ୍ୟ ପଦବୀ ପ୍ରଦାନ କରାଯାଉଥିଲା । ଏହିପରି ପ୍ରାଣାଚାର୍ଯ୍ୟ, ଭିଷଗାଚାର୍ଯ୍ୟର ଉପାଧି ଚିକିତ୍ସକଙ୍କ କାର୍ଯ୍ୟ କୁଶଳତା ଏବଂ ଯୋଗ୍ୟତା ଆଧାରରେ ପ୍ରଦାନ କରାଯାଉଥିଲା । ଆଚାର୍ଯ୍ୟ ଚରକଙ୍କ ଅନୁସାରେ-

ଶୀଳବାନ୍ ମତିମାନ ଯୁକ୍ତୋ ଦ୍ୱିଜାତି ଶାସ୍ତ୍ର ପାରଗଃ
ପ୍ରାଣୀଭି ର୍ଗୁରୁବତ୍ ପୂଜ୍ୟଃ ପ୍ରାଣାଚାର୍ଯ୍ୟଃ ସ ହି ସ୍ମୃତ ॥

(ଚରକ. ଚି. ୧/୪/୫୧)

ଯେଉଁ ଚିକିତ୍ସକ ଶୀଳବାନ୍, ଚିକିତ୍ସା କାର୍ଯ୍ୟରେ ତତ୍‌ପର, ଦ୍ୱିଜାତି, ଶାସ୍ତ୍ରଜ୍ଞ ଏପରି ଚିକିତ୍ସକକୁ 'ପ୍ରାଣାଚାର୍ଯ୍ୟ' କୁହାଯାଏ । ସେ ସମସ୍ତ ପ୍ରାଣୀଙ୍କ ପାଇଁ ଗୁରୁତୁଲ୍ୟ ପୂଜ୍ୟ । ଏହି ପବିତ୍ର ଚିକିତ୍ସା କାର୍ଯ୍ୟର ମୂଳ ଉଦ୍ଦେଶ୍ୟ ଜନକଲ୍ୟାଣ ଏବଂ ପୀଡ଼ିତ ମାନବର ସେବା କରିବା ହୋଇଥାଏ । ଆଚାର୍ଯ୍ୟ ଚରକ ନିଜ ଶିଷ୍ୟଙ୍କୁ ନିର୍ଦ୍ଦେଶ ଦେଇ କହିଛନ୍ତି କି ସମସ୍ତ ଆତୁର ବ୍ୟାଧି ପୀଡ଼ିତକୁ ନିଜପୁତ୍ର ପରି ବିଚାର କରି ଚିକିତ୍ସକକୁ ତାଙ୍କୁ ରୋଗମୁକ୍ତ କରିବାର ପୂର୍ଣ୍ଣ ପ୍ରଯତ୍ନ କରିବା ଉଚିତ, ଚିକିତ୍ସା କାର୍ଯ୍ୟରେ କାହାଠାରୁ ଧନ, କାହାଠାରୁ ମିତ୍ରତା, କାହାଠାରୁ ଧର୍ମ, କାହାଠାରୁ ଯଶ କୀର୍ତ୍ତି କିଛି ନା କିଛି ଚିକିତ୍ସକକୁ ପ୍ରାପ୍ତ ହୋଇଥାଏ । ଅତଃ ଚିକିତ୍ସକକୁ ଏହି ବୃତ୍ତିକୁ କଠୋରତା ସହ ପାଳନ କରିବା ଉଚିତ ।

ପୀଡ଼ିତ ମନୁଷ୍ୟ ସହିତ ମୈତ୍ରୀଭାବ, ସାଧବ୍ୟାଧିଙ୍କ ପ୍ରତି ପ୍ରୀତିଭାବ, ଦୟନୀୟ ମନୁଷ୍ୟ ପ୍ରତି ଦୟାଭାବ ଏବଂ ଅସାଧ ରୋଗରେ ଉପେକ୍ଷା ଭାବ ରଖିବା ଉଚିତ । (ଚରକ ସୂତ୍ର-୯/୧୬)



# ୯୬. ଗୃହସ୍ଥାଶ୍ରମର ଶ୍ରେଷ୍ଠତା

ଗାର୍ହସ୍ଥ୍ୟ ଜୀବନ ସାଧନାର ପବିତ୍ର ତପୋବନ । କାମ କ୍ରୋଧାଦି ଘାତକ ମନ ସଂବେଗକୁ ପରିସଂଖ୍ୟା ବିଧିରେ ନିଃଶେଷ ଅଥବା ଉଦାର କରିବା ହେତୁ ଏକ ସୁନ୍ଦର ପ୍ରୟୋଗଶାଳା । ସମାଜ କଲ୍ୟାଣ ସହିତ ଆତ୍ମକଲ୍ୟାଣ ଦିଗରେ ଅଗ୍ରସର ହେବାପାଇଁ ଏକ ସୌବିଧ ପୂର୍ଣ୍ଣ ସ୍ୱର୍ଣ୍ଣ ସୋପାନ ।

ସ୍ୱୟଂ ଅର୍ଜନ କରି ପରିବାର ଏବଂ ସମାଜର ଉପାର୍ଜନ ଅକ୍ଷମ ଆଶ୍ରିତ ବ୍ୟକ୍ତିମାନଙ୍କୁ ଯଜ୍ଞଶେଷ ପ୍ରାପ୍ତ କରିବା, ସଂଘର୍ଷ ପୂର୍ଣ୍ଣ ବିଶ୍ୱରେ ରହି କର୍ମଠତା ପୂର୍ବକ ଜୀବନ- ଅନୁଭବ ସଂଚିତ କରିବା ଏବଂ ବ୍ୟକ୍ତିଗତ ଅହଂତା- ମମତାରୁ ଊର୍ଦ୍ଧ୍ୱକୁ ଉଠି ବିସ୍ତୃତ ରୂପେ ଦୟା- ପ୍ରେମ ମୈତ୍ରୀ ଭାବନାର ସତତ ଅଭ୍ୟାସ କରି ଗୃହସ୍ଥର ବାସ୍ତବ କର୍ମଯୋଗ- ଜ୍ଞାନଯୋଗ ଓ ଭକ୍ତିଯୋଗ । ସଚ୍ଚା କର୍ମଯୋଗୀ ସଦ୍ ଗୃହସ୍ଥ ହୋଇଥାଏ । ତାହାପାଇଁ ଗୀତୋକ୍ତ 'ମାମନୁସ୍ମର ଯୁଧ୍ୟଚ' ମୋ'ର ସ୍ମରଣ କର ଏବଂ କର୍ତ୍ତବ୍ୟ କର୍ମରେ ଲାଗିରୁହ, ଏହା ହିଁ ଭଗବତ୍ ବାକ୍ୟର ସାର୍ଥକତା ।

ପ୍ରାଚୀନ କାଳରେ ଏହି ଆଶ୍ରମରେ ରାଜର୍ଷି ଜନକ, ମହାରାଜ ଅଶ୍ୱପତି, ଭଗବାନ୍ ଶ୍ରୀରାମ, ଯୋଗୀରାଜ ଭଗବାନ ଶ୍ରୀକୃଷ୍ଣ ଆଦି ଅନେକ ସଦ୍‌ଗୃହସ୍ଥ କର୍ମଯୋଗୀମାନଙ୍କୁ ଦେଖିବାକୁ ମିଳେ । ଯାହାର ମହତ୍ତ୍ୱ କୌଣସି, ବୈଷ୍ଣବ, ବ୍ରହ୍ମଚାରୀ, ବୈଖାନସ ବ୍ରତୀ ଏବଂ ସନ୍ୟସ୍ତ ମହାପୁରୁଷଙ୍କଠାରୁ କମ୍ ନୁହେଁ ।

ସମଗ୍ର ଦାୟିତ୍ୱ ବହନ କରି ମଧ୍ୟ ଗୃହସ୍ଥ ଘରେ ଅତିଥି ପରି ନିର୍ମମ (ମୋ'ର ନୁହେଁ) ତଥା ନିରହଂକୃତ ହୋଇ ରହିପାରେ । (ଭାଗବତ ୧୧/୧୭୫୪) । ଦାର ପରିଗ୍ରହୀ ହୋଇ ମଧ ବ୍ରହ୍ମଚାରୀ ଯୋଗୀଙ୍କ ତୁଲ୍ୟ ଉର୍ଜସ୍ୱଳ ଜୀବନ ବଂଚିପାରେ ଏବଂ ଯତିତୁଲ୍ୟ ଜୀବନ ମୁକ୍ତ ହୋଇବି ଲୋକ ସଂଗ୍ରହ କରି ଗୃହସ୍ଥକୁ ଚରିତାର୍ଥ କରି ଜୀବନ୍ମୁକ୍ତ କର୍ମଯୋଗୀ ହୋଇଥାଏ ।



# ୯୭. ପତ୍ନୀ ପ୍ରତି ଦୃଷ୍ଟି

ମାତା- ପିତାଙ୍କ ସହିତ ପତ୍ନୀ, ଗୃହିଣୀ ପ୍ରତି ମଧ ଧର୍ମଶାସ୍ତ୍ରରେ ପୂର୍ଣ୍ଣ ସମ୍ମାନ ଭାବନା ରଖିବାର ନିର୍ଦ୍ଦେଶ ଦିଆଯାଇଛି ।

ଯତ୍ର ନାର୍ଯସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ
ଯତ୍ରୈ ତାସ୍ତୁ ନପୂଜ୍ୟନ୍ତେ ସର୍ବାସ୍ତତ୍ରା ଫଳାଃ କ୍ରିୟାଃ ॥

ଯେଉଁଠାରେ ନାରୀମାନଙ୍କର ସମ୍ମାନ କରାଯାଏ, ତାଙ୍କ ପୂଜା କରାଯାଏ ସେଠାରେ ଦେବତା ରମଣ କରିଥାଆନ୍ତି । ଯେଉଁଠି ସ୍ତ୍ରୀଙ୍କର ଆଦର ହୁଏନାହିଁ, ସେଠାରେ କର୍ମ ନିଷ୍ଫଳ ହୋଇଯାଏ । ଯେଉଁ ପରିବାରରେ ସ୍ତ୍ରୀମାନଙ୍କର ଉତ୍ପୀଡ଼ନ ହୋଇଥାଏ, ତାହା ନରକ ତୁଲ୍ୟ ହୋଇଯାଏ । ତାଙ୍କୁ ପ୍ରତାରିତକାରୀ, ଅପମାନିତକାରୀଙ୍କୁ ଘୋର କଷ୍ଟ ଭୋଗୀବାକୁ ହୋଇଥାଏ । ମନୁସ୍ମୃତିର ଏ ପ୍ରସଙ୍ଗରେ କୁହାଯାଇଛି-

ଶୋଚନ୍ତି ଯାମୟୋ ଯତ୍ର ବିନସ୍ୟତ୍ୟଶୁତତ୍କୁଳମ୍
ନଶୋଚନ୍ତି ତୁ ଯତ୍ରୈତା ବର୍ଦ୍ଧତେ ତଦ୍ଧି ସର୍ବଦା ॥

ଯେଉଁଠାରେ (ସ୍ତ୍ରୀ) ନାରୀଙ୍କୁ ପ୍ରତାରିତ କରାଯାଏ ଏବଂ ସେ ଦୁଃଖିତ ହୋଇଥାଏ, ସେଠାରେ ଶୀଘ୍ର କୁଳ ନଷ୍ଟ ହୋଇଯାଏ । ଯେଉଁଠାରେ ସ୍ତ୍ରୀମାନେ ଦୁଃଖିତ ହୁଅନ୍ତି ନାହିଁ ସେହି କୁଳ ପରିବାର ସଦା ବୃଦ୍ଧି ପ୍ରାପ୍ତ ହୋଇଥାଏ । ହିନ୍ଦୁଧର୍ମରେ ସ୍ତ୍ରୀଙ୍କୁ ପୂଜ୍ୟାଭାବେ ଗ୍ରହଣ କରାଯାଇଛି । ଅତଃ ପରିବାରର ସୁଖ ସମୃଦ୍ଧି ପାଇଁ ଆମେ ସ୍ତ୍ରୀଙ୍କୁ ପୂର୍ଣ୍ଣ ଆଦର, ସମ୍ମାନ ଦେବା ଉଚିତ ।



# ୯୮. ତ୍ୟାଗ (ଦାନ)

ଶ୍ରୀରାମଚନ୍ଦ୍ର ପିତାଙ୍କ ବଚନ ପାଇଁ ରାଜ୍ୟ ତ୍ୟାଗ କଲେ । ଭରତ ସେହି ରାଜ୍ୟରେ ରହି ମଧ୍ୟ ସିଂହାସନ ତ୍ୟାଗକଲେ । ଶ୍ରୀକୃଷ୍ଣ ସବୁପାଇ ମଧ୍ୟ ସବୁକିଛି ତ୍ୟାଗକଲେ । ଭଗବାନ ବୁଦ୍ଧ ଦୁଃଖୀ ମାନବ ପାଇଁ, ସୁଖ ଅନୁସନ୍ଧାନ ପାଇଁ ସଂସାର ବୈଭବ ଏବଂ ଐଶ୍ୱର୍ଯ୍ୟ ତ୍ୟାଗ କଲେ । ଅନ୍ୟମାନେ ବଞ୍ଚନ୍ତୁ, ଏଥିପାଇଁ ଯୀଶୁ ଜୀବନ ଦେଲେ । ସେ ନିଜକୁ ଉତ୍ସର୍ଗ କରିଦେଲେ, ଆପଣାକୁ ଦେଇ ଦେବା ହିଁ ପରମ ପୌରୁଷ ।

ହୁଏତ ଆପଣ କହିବେ, ଯେ ବଡ଼ ଲୋକଙ୍କ କଥା, ଏହା ଆମପରି ସାଧାରଣ ବ୍ୟକ୍ତି କ'ଣ କରି ପାରିବ ? କିନ୍ତୁ ଆପଣ ଭୁଲୁଛନ୍ତି ସଂସାରରେ ଏପରି କୌଣସି ବ୍ୟକ୍ତି ନାହିଁ, ଯେ ଜ୍ଞାତ ଅଜ୍ଞାତରେ ନିଜର କିଛି ଅଂଶ ନଦେଉଛି । ସେ ଦେବା ପାଇଁ ବିବଶ ହେଉଛି ଦେବାବିନା, ସମର୍ପଣ ବିନା ଅଳ୍ପ ବା ବେଶୀ- ସେ କ୍ଷଣେ ମାତ୍ର ବଂଚିନପାରେ । ଆବଶ୍ୟକତା ଏତିକି ହିଁ ହୋଇଥାଏ ଯେ ଏହି ବିବଶ ଦାନକୁ ହାର୍ଦ୍ଦିକ ଦାନରେ ବଦଳାଇଦେବା । ବିବଶ ନହୋଇ ସ୍ୱେଚ୍ଛାରେ ଦିଅ, ହୃଦୟରୁ ଦିଅ, ପ୍ରେମରେ ଦିଅ । ଯାହା ପ୍ରେମରେ ଦିଆଯାଏ, ତାହା ବସ୍ତୁତଃ ଦେଇଥାଏ ଏବଂ ଯେବେ ଏହି ପ୍ରେମ ଦାନର କ୍ରିୟା ଆରମ୍ଭ ହୁଏ, ତେବେ ଏପରି ଅନିର୍ବଚନୀୟ ସୁଖ ମିଳିଥାଏ ଏବଂ କେହି ଦାନ ଧାରାର ଗତିକୁ ରୋଧ କରି ପାରିବେ ନାହିଁ । ଥରେ ଦାନର ସ୍ୱାଦ ମିଳିଲେ ପୁନଃ ମନୁଷ୍ୟ ଦେଇଚାଲେ, ଏ ଯାବତ୍ ଯେ ନିଜକୁ ପୂରା ଲୁଟିଦିଏ ।

ଏଣୁ ସୁଖ ଚାହୁଁଛ ତ, ଆନନ୍ଦ ପାଇଁ ଭ୍ରମୁଛ ତ, ତେବେ ଯେତେ ଦେଇ ପାରିବ, ଦିଅ । ନିଜ ଜୀବନର ଗତି ସଂଚୟରୁ ଦାନ ଦିଗକୁ ମୁହାଁଇ ଦିଅ । ଏହା ସାମାନ୍ୟ କଷ୍ଟକର ମଧ୍ୟ ନୁହେଁ, ବିଲ୍‌କୁଲ୍ ତୁମର ସ୍ୱାଭାବିକ, ପ୍ରକୃତି । ଅନୁକୂଳ ଥରେ କରି ଦେଖ, ପୁଣି କାହାରିକୁ କହିବାକୁ ହେବନାହିଁ, କାହାକୁ ଶିଖେଇବାକୁ ହେବନାହିଁ, ଦେଇ କରି ସ୍ୱୟଂ ଦେଖ, ଦେବାରେ ଆନନ୍ଦ କେତେ ।



# ୯୯. ସର୍ବେ ଚଳିବେ

ଅଫିସ୍‌ରେ କାମ କରିବାକୁ ଯାଇଥାଆନ୍ତି, ଭିତରେ ଏହି କଥା ସ୍ଥିର ରହିଛି ଯେ କାର୍ଯ୍ୟ ନିର୍ଘଣ୍ଟ ସମାପ୍ତ ହେଲେ ଘରକୁ ବାହୁଡ଼ି ଯିବା । ଏକଥାକୁ ମନେରଖନ୍ତି ନାହିଁ, ଏହାକୁ ଚିନ୍ତା କରନ୍ତି ନାହିଁ, ଯାକୁ ଜପ କରନ୍ତି ନାହିଁ, କିନ୍ତୁ ଭିତରେ ଏହିକଥା ଦୃଢ଼ ହୋଇଥାଏ । ସେହିପରି ଯେ ସଂସାର ରହିବାର କଥା ଏହା ବିଲ୍‌କୁଲ ଓଲଟା କଥା ଏବଂ ଏଠାରେ ନ ରହିବା କଥା ବିଲ୍‌କୁଲ ସତ୍ୟ । ନିଶ୍ଚିତ କଥାକୁ ମାନିନିଅ । ଏଥିରେ କିଛି କରିବାକୁ ହେବନାହିଁ । ଏହାକୁ ନିର୍ବିକଳ୍ପ ରୂପେ ମାନିନେବା ପରେ ଏହା ବିଚାର ବିଷୟ ହୋଇ ରହେନାହିଁ । ଏହାକୁ ମାନିନେଲେ ଅଶେଷ ଲାଭ ହେବ । ଯେ ଯେତେ ସବୁ ସାଧନ ଏହା ଉପରେ ହିଁ ଆଧାରିତ । ଏହା ସବୁର ଆଧାର ଶିଳା । ଆସ୍ତିକ ହେଉ କି ନାସ୍ତିକ ଯେ କେହି ହେଉ, ଏହା ସମସ୍ତଙ୍କ ପାଇଁ ନିଶ୍ଚିତ କଥା ଏବଂ ଯଥାର୍ଥ ଅନୁଭବ କଥା । ଏପରି ନୁହେଁ କି ଶାସ୍ତ୍ରରେ ଲେଖା ହୋଇଛି ତେଣୁ ମାନିନେଲି, ଯାହାର ଶ୍ରଦ୍ଧା ହେବ ସେ ମାନିନେବ, ଯାହାର ଶ୍ରଦ୍ଧା ନହେବ, ସେ ନ ମାନିବ । ଏଥିରେ ଶ୍ରଦ୍ଧାର ମଧ୍ୟ ଆବଶ୍ୟକ ନାହିଁ । ଏହା ପ୍ରତ୍ୟକ୍ଷ ଏବଂ ସିଧାକଥା କି ଆମର ବାଳକ ଅବସ୍ଥା ଚାଲିଗଲା । ତାକୁ ଖୋଜିଲେ ତାହା ମିଳେନାହିଁ । ଏପରି ପ୍ରବାହ ଏବେ ବି ଚାଲୁ ରହିଛି ।

ଶରୀର- ସଂସାରକୁ ସ୍ଥିର ମାନିନେଲେ ତ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଥାଏ ଏବଂ ଦ୍ୱନ୍ଦ୍ୱରୁ ମୋହ ସୃଷ୍ଟି ହୁଏ । ଏହାପରେ ଯେ ଦ୍ୱନ୍ଦ୍ୱ ମୋହରୁ ରହିତ ହୋଇଯାଏ, ସେ ଦୃଢ଼ବ୍ରତୀ ହୋଇ ଭଗବାନ୍‌ଙ୍କୁ ଭଜନ କରିଥାଏ । (ଗୀତା- ୭/୨୮) ରାଗଦ୍ୱେଷାଦି ଦ୍ୱନ୍ଦ୍ୱରୁ ରହିତ ବ୍ୟକ୍ତି ସୁଖ ପୂର୍ବକ ସଂସାର ବନ୍ଧନରୁ ମୁକ୍ତ ହୋଇଯାଏ ।

ନିର୍ଦ୍ୱନ୍ଦୋହି ମହାବାହୋ ସୁଖଂ ବନ୍ଧାତ୍ ପ୍ରମୁଚ୍ୟତେ ।।

(ଗୀତା- ୫/୩)



# ୧୦୦. ପୁରୁଷାର୍ଥ

ଆପଣାର ହିତସାଧନ ପାଇଁ ଏବଂ ଅହିତରୁ ରକ୍ଷା ପାଇବା ପାଇଁ ମନୁଷ୍ୟକୁ ଯେଉଁ ସାହସ, ଉଦ୍ୟମ କରାଯାଏ ତାହା ହିଁ ପୁରୁଷାର୍ଥ । ଏହା ଫଳତଃ ପରାକ୍ରମ ରୂପେ ପ୍ରତିଭାତ । ଅନ୍ୟ ଶବ୍ଦରେ କହିଲେ ଭଲ କର୍ମ କରିବା ଖରାପ କର୍ମରୁ ବିରତ ହେବା ଅର୍ଥାତ୍ ପୁଣ୍ୟକର୍ମ, ଶୁଭକର୍ମ କରିବା ଏବଂ ଅଶୁଭ କର୍ମକୁ ତ୍ୟାଗ କରିବା ଏବଂ ଭବିଷ୍ୟତରେ ତାହା ନ କରିବା ବିଚାର କରିବା ହେଉଛି ପୁରୁଷାର୍ଥ । ଶୁଭକର୍ମକୁ ମଧ୍ୟ ଏପରି କରିବ, ତାହା ମନରେ ସଂସ୍କାର ହୋଇ ମନରେ ରହିବ । ସମସ୍ତ ଅଶୁଭ ଏବଂ ଅବିଗୁଣକୁ ତ୍ୟାଗ କରିବା ଏବଂ ସମସ୍ତ ସଦ୍‌ଗୁଣର ଏକତ୍ର କରିବା ପୁରୁଷାର୍ଥର ଯଥାର୍ଥ ରୂପ । କାମ, କ୍ରୋଧ, ଲୋଭ, ଈର୍ଷା, ମତ୍ସର, ମଦ ଏବଂ ଅଧୈର୍ଯ୍ୟ ଇତ୍ୟାଦି ସବୁ ଅଶୁଭ ଗୁଣ । ସେହିପରି ବୈରାଗ୍ୟ, କ୍ଷମା, ସନ୍ତୋଷ, ମୈତ୍ରୀ, ଧୈର୍ଯ୍ୟ ଇତ୍ୟାଦି ଶୁଭ ଗୁଣ । ଏହା ବିଶେଷ ପରିଶ୍ରମରେ ଧାରଣ କରାଯାଇ ନପାରେ । ଏଥିପାଇଁ ନିରନ୍ତର ଯତ୍ନ କରିବା ଉଚିତ, ତେବେ ଏହାକୁ ଧାରଣ କରିପାରିବା । ଏହି ସବୁ ପୁରୁଷାର୍ଥ । ଅନୁରୂପ ଭାବେ କାମ, କ୍ରୋଧାଦି ଯେତେ ବିକାର, ଏସବୁ ପଶୁପକ୍ଷୀ ତୁଲ୍ୟ ମନୁଷ୍ୟ ମଧ୍ୟରେ ବିନା ଯତ୍ନରେ ଆସି ରହିଥାଆନ୍ତି । ଯେପରି ଘର ବିନା ପରିଶ୍ରମରେ ଧୂଳି- ମଇଳା ହୋଇଯାଏ କିନ୍ତୁ ସଫା କରିବାକୁ ତ ଉଦ୍ୟମ ଦରକାର । ଅଶୁଭ ବାସନା ଅଶୁଭ କର୍ମ କରାଇଥାଏ । ଏହାକୁ ମଧ୍ୟ ଯତ୍ନ ଓ ପରିଶ୍ରମରେ ହଟାଇ ରଖିବା, ଏ ସବୁ ପୁରୁଷାର୍ଥ ।

ଧର୍ମ ଶାସ୍ତ୍ରରେ ଧର୍ମ- ଅର୍ଥ- କାମ-ମୋକ୍ଷ ଏହି ଚାରି ପୁରୁଷାର୍ଥ କଥିତ । ଯଦି କୌଣସି ଉଦ୍ଦେଶ୍ୟ ବିଶେଷକୁ ପୂର୍ତ୍ତି କରିବା ପାଇଁ ମନୁଷ୍ୟ ଯତ୍ନ କରିଥାଏ, ତେବେ ପୁରୁଷର ଏହି ପ୍ରଯତ୍ନ, ପ୍ରୟୋଜନ ମଧ୍ୟ 'ପୁରୁଷାର୍ଥ' ଶବ୍ଦରେ ନିରୂପିତ କରାଯାଇଥାଏ ।



# ୧୦୧. କର୍ମ ରହସ୍ୟ

ସନ୍ଥ, ପୂର୍ବଜଗଣ ଏବଂ ଆଧ୍ୟାତ୍ମିକ ମନୀଷି ବୃନ୍ଦ ଦୀର୍ଘ ଅନୁଭବ ପରେ 'ଅନ୍ତମତି ସୋ ଗତି' ସୂତ୍ରର ପ୍ରତିପାଦନ କରି ସ୍ପଷ୍ଟ କରିଛନ୍ତି ଯେ ମରଣାସନ୍ନ ପ୍ରାଣୀର ଠିକ୍ ମୃତ୍ୟୁର ପୂର୍ବରୁ ଯେଉଁ ବିଚାର ହୋଇଥାଏ, ଭଗବାନ ତାହାକୁ ସେହି ଯୋନି ନିଶ୍ଚିତ ରୂପେ ପ୍ରଦାନ କରିଥାଆନ୍ତି, ଏଥିରେ ସନ୍ଦେହ ନାହିଁ । ବିଭିନ୍ନ ଯୋନିରେ ପ୍ରତିପାଦିତ ସୁକର୍ମର ଫଳସ୍ୱରୂପ ପ୍ରଭୁ ମୋକ୍ଷର ପାତ୍ର ବୁଝି ପ୍ରାଣୀକୁ ଏହି ଉଦ୍ଦେଶ୍ୟ ପ୍ରାପ୍ତି ପାଇଁ ମାନବଯୋନି ପ୍ରଦାନ କରିଅଛନ୍ତି । ଯଦି ସେ ପଥଭ୍ରଷ୍ଟ ହୁଏ ପୁନଃପୁନଃ ବିଭିନ୍ନ ଯୋନିରେ ଭ୍ରମଣ କରିବାରୁ ନିଜେ ନିଜକୁ ମୁକ୍ତ କରିପାରେ ନାହିଁ, ଏଥିରେ ଦୋଷ କାହାର ? କର୍ମ କାରଣରୁ ଏପରି ହୋଇଥାଏ ।

କର୍ମ କରିବା ଜଗତର ମୁଖ୍ୟ କର୍ତ୍ତବ୍ୟ । ଈଶ୍ୱର କେବେ ବି କହି ନାହାଁନ୍ତି କି କର୍ମରୁ ପରେ ରୁହ, ସଂଜମିତ ରୁହ, କର୍ମ କର ସ୍ୱାର୍ଥବଶ ହୁଅନାହିଁ, ପରମାର୍ଥ ହେତୁ କର୍ମକର । ନିଜେ ଅନିଷ୍ଟ ସହ୍ୟକରି ମଧ୍ୟ ପରମାର୍ଥ ହେତୁ କରାଯାଇଥିବା କର୍ମ ଭଗବାନଙ୍କର ଅତ୍ୟନ୍ତ ପ୍ରିୟ । ପ୍ରତ୍ୟେକ କର୍ମ ତାଙ୍କ ଦ୍ୱାରା ପ୍ରେରିତ, ନିର୍ଦ୍ଦିଷ୍ଟ ଏବଂ ନିର୍ଦ୍ଧାରିତ, ଯାହା ପାଇଁ ନିମିତ୍ତ ତ ଆପଣଙ୍କୁ ହେବାକୁ ପଡ଼ିବ ।



# ୧୦୨. ଈଶ୍ୱର

ସ୍ୱୟଂ ପ୍ରକାଶ ଶୁଦ୍ଧ ଚୈତନ୍ୟ ପରଂବ୍ରହ୍ମ ଯେବେ ଶୁଦ୍ଧ ସତ୍ତ୍ୱ ପ୍ରଧାନ ଭୂତ ମାୟାରେ ପ୍ରତି ବିମ୍ବିତ ହୋଇଥାଏ, ତେବେ ସର୍ବଶକ୍ତି ପରମେଶ୍ୱର ହୋଇଯାଆନ୍ତି । ତମୋ ଗୁଣାତ୍ମକ ଆବରଣ ଶକ୍ତିରେ ଚୈତନ୍ୟରେ ଆବୃତ୍ତ ହୋଇଯିବା ପରେ ରଜୋଗୁଣାତ୍ମିକା ବିକ୍ଷେପ ଶକ୍ତି ବିଜୃମ୍ଭିତ ହୋଇଉଠେ । ସେହି ଆତ୍ମା, ଶୁଦ୍ଧ ଚୈତନ୍ୟରୁ ଆକାଶ ଉତ୍ପନ୍ନ ହୁଏ ତଥା ତହିଁରୁ ବାୟୁ ଆଦି କ୍ରମରେ ଆବ୍ରହ୍ମ ସ୍ତମ୍ଭ ପର୍ଯ୍ୟନ୍ତ ଜଡ଼ ଚେତନାତ୍ମକ ଅସଂଖ୍ୟ ଜୀବ ଗଣୋପେତ ସ୍ଥୁଳ, ସୂକ୍ଷ୍ମ, କାରଣାତ୍ମକ ତ୍ରିବିଧ ଶରୀରମୟ ଜଗତ୍ ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତାତ୍ମକ ତ୍ରିବିଧ ଅବସ୍ଥା ସଂଯୁକ୍ତ ପଞ୍ଚ କୋଷାତ୍ମକ ଚତୁର୍ଯୋନିମୟ ଅନିର୍ବଚନୀୟ ପ୍ରପଞ୍ଚ ରୂପରେ ମାୟାର ପରିଣାମ ହୋଇଥାଏ । ଏହି ପରିଣାମ ଶୁଦ୍ଧ ଚୈତନ୍ୟର ବିବର୍ତ୍ତ ହୋଇଥାଏ । ଜାଣନ୍ତୁ କି ଏହି ସକଳ ପ୍ରପଞ୍ଚ ଏକମାତ୍ର ଶୁଦ୍ଧ ଚୈତନ୍ୟରେ ଅଧିଷ୍ଠିତ । ଅଥବା କଳ୍ପିତ ତଥା ଭ୍ରମାତ୍ମକ ହୋଇଥାଏ ।

ସଂସାରରେ ଯେଉଁ ଅସଂଖ୍ୟ ଆତ୍ମା ନାମ- ରୂପରେ ବ୍ୟକ୍ତ ହୋଇଛନ୍ତି, ତାହା ପରମାତ୍ମାଙ୍କ ଅସଂଖ୍ୟ ସତ୍ତା । ଏକ ହିଁ ପରମାତ୍ମା ସତ୍ତାଙ୍କର ଏ ଅସଂଖ୍ୟ ଭେଦ । ଯଦ୍ୟପି ଏକ ହିଁ ପରମାତ୍ମା ସତ୍ତାଙ୍କ ଅନ୍ତର୍ଗତ ହୋଇଥିବାରୁ ଏକ ଅନ୍ୟଠାରୁ ପୃଥକ୍ ନୁହେଁ । ଅତଏବ ପରସ୍ପର ସମ୍ବନ୍ଧିତ । ଯେଉଁ ଯେଉଁ ସତ୍ତା, ଜ୍ଞାନ ଏବଂ ଆନନ୍ଦର ଭେଦରେ ସେଗୁଡ଼ିକ ଗୋଟିଏ ଅନ୍ୟଠାରୁ ପୃଥକ ନୁହେଁ । ଯେଉଁ ସବୁ ସତ୍ତା, ଜ୍ଞାନ ଏବଂ ଆନନ୍ଦ ଭେଦରେ ନାମ ରୂପାତ୍ମକ ଜଗତରେ ନାମ- ରୂପରେ ବ୍ୟକ୍ତ ହୋଇଛି ସେ ସେହି ସତ୍ତା ଜ୍ଞାନ ଓ ଆନନ୍ଦକୁ ବ୍ୟକ୍ତ କରିବା ପାଇଁ ହିଁ ହୋଇଛି । ଅବ୍ୟକ୍ତ ବ୍ୟକ୍ତ ହେବାର ଇଚ୍ଛା ବ୍ୟତୀତ ଅନ୍ୟ କୌଣସି କାରଣ ହୋଇ ନପାରେ ।



# ୧୦୩. କର୍ମର ସ୍ୱରୂପ

ନିଷ୍କାମ କର୍ମ ଯୋଗରେ କର୍ମ ହିଁ ସେହି କାର୍ଯ୍ୟକାରୀ ଉପାଦାନ ଯାହା ଉପରେ ଏହି ଯୋଗର ଭବ୍ୟ ପ୍ରାସାଦ ନିର୍ମିତ ହୋଇଅଛି । ଯଦ୍ୟପି କର୍ମର ଗତି ଅତ୍ୟନ୍ତ ଗହନ ତଥା କଠିନ, ତଥାପି ଗୀତାରେ ବିଭିନ୍ନ ସଂଦର୍ଭରେ କର୍ମର ବିଭାଜନ ଏହି ପ୍ରକାର ।

| | | |
|---|---|---|
| ୧– କର୍ମ | ଅକର୍ମ | ବିକର୍ମ |
| ୨– ସାତ୍ତ୍ୱିକ | ରାଜସ | ତାମସ |
| ୩– ଶାରୀରିକ | ମାନସିକ | ବାଚିକ |
| ୪– ଇଷ୍ଟ | ଅନିଷ୍ଟ | ମିଶ୍ରିତ |
| ୫– ଶୁଭ | ଅଶୁଭ | ଶୁଭାଶୁଭ |
| ୬– ସଞ୍ଚିତ | ପ୍ରାରବ୍ଧ | କ୍ରିୟମାଣ |

ମାନସିକ ଭାବନା ହିଁ କ୍ରିୟାଗୁଡ଼ିକୁ କର୍ମ ଅକର୍ମ ତଥା ବିକର୍ମ କରିବାର ମୂଳ ହେତୁ । କର୍ମର ସ୍ୱରୂପ ଏକ ଦେଖାଯାଉଥିଲେ ହେଁ ମାନସିକ ଭାବନାରେ ଅନ୍ତର ହେବା କାରଣରୁ ତାହାର ସ୍ୱରୂପ ତଥା ପରିଣାମରେ ଅନ୍ତର ଆସିଥାଏ । କୌଣସି କ୍ରିୟା ସାଧାରଣ କାମନା ରହିବା କାରଣରୁ କର୍ମ, କାହାରିକୁ ଅନିଷ୍ଟ ପହଞ୍ଚାଇବା ଭାବନା ହେବାରୁ ବିକର୍ମ ତଥା କାମନା ରହିତ ହେଲେ ଅକର୍ମ ବା ନିଷ୍କାମ କର୍ମ ହୋଇଯାଇଥାଏ ।

**ମନ ଏବ ମନୁଷ୍ୟାଣାଂ କାରଣଂ ବନ୍ଧ ମୋକ୍ଷୟୋଃ**
**ବନ୍ଧାୟ ବିଷୟାସକ୍ତଂ ମୁକ୍ତୈ ନିର୍ବିଷୟଂ ସ୍ମୃତମ୍ ॥**

(ମୈତ୍ରାୟଣ୍ୟୁପନିଷଦ ୪/୧୧)



# ୧୦୪. କର୍ମକୁ ହିଁ ପ୍ରାଧାନ୍ୟ ଦିଅ, କର୍ମଠତାକୁ ଆପଣେଇ ନିଅ

ବସ୍ତୁତଃ ଏହି ଜଗତରେ କର୍ମ ହିଁ ପ୍ରଧାନ । ଭାଗ୍ୟ ଯଦି କୌଣସି ବସ୍ତୁ ହେଲେ ମଧ୍ୟ ତେବେ ତାହାକୁ ନିଜ କର୍ମର ପ୍ରତିଫଳ ହିଁ କୁହାଯିବା ଉଚିତ । କର୍ମଦ୍ୱାରା ଯଦି ଖରାପ ଭବିଷ୍ୟର ଖରାପ ପରିଣାମର ସ୍ଥିତି ଆମେ ଉତ୍ପନ୍ନ କରିଛେ, ତେବେ ଏହା ମଧ୍ୟ କରି ପାରିବା କି ଶ୍ରେଷ୍ଠ କର୍ମ ସମ୍ବଳ ଆଶ୍ରୟ କରି ଉଜ୍ଜ୍ୱଳ ଭବିଷ୍ୟତର ନିର୍ମାଣ କରିହେବ । ଅସଂଜମ ଆହାର ଗ୍ରହଣ ଦ୍ୱାରା ପେଟ ଦରଜ ଆମେ ନିଜେ କରୁ । ଏହି ଦରଜ କୌଣସି ଭାଗ୍ୟରେଖା ନୁହେଁ । ଉପଯୁକ୍ତ ଔଷଧ ସେବନ ଦ୍ୱାରା ଏହି ଦରଜ ନିରାକୃତ ହୋଇପାରିବ । ସେହିପରି ଯଦି ଅତୀତର କୌଣସି ଅଶୁଭ କର୍ମ କରାଯାଇଛି, ଏବଂ ତା'ର ପରିଣାମ ସ୍ୱରୂପ ଖରାପ ଭବିଷ୍ୟତର ସମ୍ଭାବନା ସୃଷ୍ଟି ହୋଇଛି, ତେବେ ନୂଆ ସତ୍ ପ୍ରଯନ୍ନ ତାକୁ ସମାପ୍ତ କରିଦିଏ । ବାଲ୍ମୀକିଙ୍କ ପ୍ରସଙ୍ଗ ଏଠାରେ ସ୍ମରଣୀୟ । ସେ ଯେବେ ନିଜର ଜୀବନ କ୍ରମ ପରିବର୍ତ୍ତିତ କରିଦେଲେ ଏବଂ ସନ୍ଥ ହୋଇଗଲେ ତେବେ ସେହି କାର୍ଯ୍ୟର ପରିବର୍ତ୍ତନ ସହ ତାଙ୍କ ଭାଗ୍ୟ ପରିବର୍ତ୍ତିତ ହୋଇଗଲା । ତାଙ୍କୁ ନାରକୀୟ ଯାତନା ସହିବାକୁ ହେଲା ନାହିଁ ବରଂ ସମ୍ମାନପୂର୍ଣ୍ଣ ଶ୍ରେଷ୍ଠ ଏବଂ ସୁଖୀ ଜୀବନ ବିତାଇବାର ଅଧିକାରୀ ହୋଇଥିଲେ ।

ନୂତନ ସତ୍କର୍ମ ଆରମ୍ଭ କରିଦେବା ଦ୍ୱାରା ପୁରାତନ ଭୁଲ ଉପରେ ପରଦା ପଡ଼ିଯାଏ । ପୁରୁଣା ମଇଳା କାନ୍ଥରେ ଯଦି ସିମେଣ୍ଟ ପ୍ଲାଷ୍ଟର ଏବଂ ରଂଗ ଆଦିର ବ୍ୟବସ୍ଥା କରାଯାଏ ତେବେ ନୂତନ ଏବଂ ନେତ୍ରରଂଜକ ଦେଖାଯାଏ । ପୁରୁଣା ଦୁଷ୍କର୍ମକୁ ପ୍ରାୟଶ୍ଚିତ କରି ଯଦି ଭବିଷ୍ୟତ ପାଇଁ ସତ୍କର୍ମର କ୍ରମ ବ୍ୟବସ୍ଥା କରାଯାଏ କାହାରି ଖରାପ ଭବିଷ୍ୟତ ଏବଂ ଭାଗ୍ୟ ମଧ୍ୟ ଆନନ୍ଦମୟରେ ପରିଣତ ହୋଇପାରିବ ।



# ୧୦୫. ଧର୍ମମୟ କାମ

କାମ ଧର୍ମମୟ ତେବେ ହୋଇପାରିବ ଯେବେ କାମ ବୀଜକୁ ଜ୍ଞାନବୀଜ ରୂପେ ପରିଷ୍କାର କରାଯାଇଥାଏ । ଇନ୍ଦ୍ରିୟ ସଙ୍ଗମରେ ଏହାର ପ୍ରାରମ୍ଭ ତ ହୋଇଥାଏ, କିନ୍ତୁ ଅନ୍ତ ହୋଇଥାଏ ବ୍ରହ୍ମରେ ଏକାକାର ହୋଇ ମୋକ୍ଷରେ । ଇନ୍ଦ୍ରିୟ ସଂଜମ ମଧ୍ୟ ଦମନ ପ୍ରଧାନ ନୁହେଁ, କାମନାର ପରିଷ୍କାର ବା ଭାବନାର ଉର୍ଦ୍ଧ୍ୱୀକରଣର ମାର୍ଗ । ବ୍ରହ୍ମଚର୍ଯ୍ୟର ସୁନ୍ଦରତମ ସ୍ୱରୂପ ଆଦର୍ଶ ବା ସିଦ୍ଧାନ୍ତ ପ୍ରତି ପ୍ରଗାଢ଼ ନିଷ୍ଠା ରୂପେ ଦେଖା ଦେଇଥାଏ । ଏହି ତଥ୍ୟରେ ଅବଗତ ବା ଏହାର ଅନୁଭୂତି ହୋଇଯିବା ପରେ ବ୍ୟକ୍ତି ଯୌନ ଆକର୍ଷଣକୁ ତୁଚ୍ଛ କରିଦେଇ କାମକୁ ମୋକ୍ଷରେ ପରିଣତ କରି ଦେଇଥାଏ । ବସ୍ତୁତଃ କାମର ସ୍ଥୁଳ ଆକର୍ଷଣକୁ ଆଧ୍ୟାତ୍ମିକ ପ୍ରେମରେ ପରିବର୍ତ୍ତନ ହିଁ ଉର୍ଦ୍ଧ୍ୱ ଗମନ । ପ୍ରତିଭାର ଜାଗରଣ, ଓଜସ୍ୱୀତାର ପ୍ରକଟୀକରଣ, ହୃଦୟର ବିଶାଳତାର ଆଦର୍ଶ ରୂପେ ଦେଖାଯିବା କାମର ସୁନ୍ଦରତମ ଅଭିବ୍ୟକ୍ତି । ମୋକ୍ଷର ଜୀବନ ବନ୍ଧନରୁ ମୁକ୍ତିକୁ ଈଶ୍ୱରୀୟ ସାନ୍ନିଧ୍ୟର ଦିବ୍ୟ ରସାୟନର ଭୂମିକା ଯହିଁରୁ ସୃଷ୍ଟି ହୁଏ । ଆଧ୍ୟାତ୍ମ ସମ୍ମତ କାମବିଜ୍ଞାନ ହିଁ ଆଜିର ଭୋଗ ପ୍ରଧାନ ସଂସ୍କୃତିର ଉତ୍ତର, ଏଥିରେ କୌଣସି ସଂଶୟ ନହେବା ଉଚିତ ।

ଆଜିର ଆସ୍ଥା ସଂକଟ 'ଅର୍ଥ' ବା 'କାମ' ଏ ଦୁଇଟି ଧର୍ମଠାରୁ ବିଚ୍ଛିନ୍ନ ହୋଇଯିବାରୁ ସୃଷ୍ଟି ହୋଇଛି । ଏହାର ନିଷ୍କର୍ଷ ସମସ୍ତ ବିଚାରରେ ନିହିତ । ଯେବେ ମଧ୍ୟ ଯେଉଁ ସମାଜରେ ଉପାର୍ଜନ ହେତୁ ଅର୍ଥ ଏବଂ ଉପଭୋଗ ହେତୁ କାମ ବିନା କୌଣସି ତ୍ୟାଗ ବିନା ମାନବ ମାତ୍ର ପ୍ରତି ସଂବେଦନା କରୁଣା ଜାଗ୍ରତ କରେ, ନିୟୋଜନ ହେବ ତ ସେହି ସମାଜ ପତନର ଗର୍ତ୍ତରେ ପଡ଼ିବ । ଯଦି ସମାଜ, ବ୍ୟକ୍ତିକୁ ସମୁଚିତ ମାର୍ଗରେ ସୁପରିଚାଳିତ କରିବା ସତ୍ୟଯୁଗ ଦୁନିଆର ଅନୁରୂପ ବିକଶିତ କରିବାକୁ ହୁଏ ତେବେ ଅଥବା କାମକୁ ଧର୍ମ ଆଧାର ଉପରେ ପ୍ରତିଷ୍ଠିତ କରିବାକୁ ହେବ । ସାଂସ୍କୃତିକ କ୍ରାନ୍ତି ଆଗାମୀ ଦିନରେ ଏହି କାର୍ଯ୍ୟ କରିବାକୁ ଯାଉଛି ।

(ପଣ୍ଡିତ ଶ୍ରୀରାମଶର୍ମା ଆଚାର୍ଯ୍ୟ)



# ୧୦୬. ମୋକ୍ଷ

ମୋକ୍ଷ ସମ୍ବନ୍ଧରେ ଭ୍ରମାତ୍ମକ ଧାରଣା ପ୍ରଚଳିତ ଯେ "ମରିବାପରେ ହିଁ ମୋକ୍ଷ ମିଳିଥାଏ । ଦେହ ଧାରଣ କରିବା ହିଁ ଜୀବନର ମହାନ ବନ୍ଧନ । ଦେହବାନ୍ ହୋଇ ଜନ୍ମ- ମରଣର ପରତନ୍ତ୍ରତାରୁ ମୁକ୍ତି କେହି ପାଇନାହିଁ" ଇତ୍ୟାଦି । ଯେବେ ଋଷି- ମନୀଷୀଙ୍କୁ ମାନବ ଜନ୍ମ ପ୍ରାପ୍ତ କରି ଏହି କାରଣ ମାନନ୍ତି ଯେ ବ୍ୟକ୍ତି ଏହି ପରମ ପୁରୁଷାର୍ଥ, ଯଦ୍ୱାରା ମୁକ୍ତି ଅପବର୍ଗ ବା ନିଃଶ୍ରେୟସ ନାମ ମଧ ଦେଇଛନ୍ତି । ଏଥିପାଇଁ କର୍ମ କର ବା ପରମତ୍ତ୍ୱ ପ୍ରାପ୍ତି ହେତୁ ଏହି ସୁଯୋଗକୁ ସାର୍ଥକ କର । ମୋକ୍ଷକୁ କାଳାନ୍ତରରେ ବିକଶିତ ମାନ୍ୟତା ଗୁଡ଼ିକ ପରଲୋକର ସୁଖର ପ୍ରଲୋଭନରେ ସଂଯୁକ୍ତ କରି ଦିଆଗଲା । ଅପରପକ୍ଷେ ବୈଦିକ ସଂସ୍କୃତିର ପ୍ରେରଣା ଜୀବନକୁ ପ୍ରତ୍ୟେକ କ୍ଷେତ୍ରରେ କର୍ତ୍ତବ୍ୟ ପାଳନର ଧର୍ମ ନିର୍ଦ୍ଦେଶିତ କରି ତାହାକୁ ଜୀବନ୍ମୁକ୍ତି, ବନ୍ଧନ ମୁକ୍ତିର ମାର୍ଗ ସୂଚାଇଛନ୍ତି । ଉପନିଷଦକାର କହନ୍ତି କି ଆତ୍ମତତ୍ତ୍ୱ ସର୍ବଶ୍ରେଷ୍ଠ ପ୍ରାପ୍ତ କରାଯିବା ବସ୍ତୁ (ତତ୍ତ୍ୱ) । ସେ କହନ୍ତି- 'ନାଳ୍ପେ ସୁଖମ୍‌ସ୍ତି । ଯୋ ବୈଭୂମା ତତ୍ ସୁଖମ୍' । ସୁଖ ତ ମହାନତାର ପ୍ରାପ୍ତିରେ ରହିଛି । ଜୀବକୁ ବ୍ରହ୍ମ ସହିତ ସାକ୍ଷାତ୍‌କାର କରିବାକୁ ହେବ, ଏପରି ହେବାପାଇଁ ହେବ, ସାଧନାରେ ଲିପ୍ତ ହେବାପାଇଁ ନୁହେଁ । ଅତଃ ବ୍ୟକ୍ତିକୁ ଏହି ଜୀବନରେ ହିଁ ଆତ୍ମତତ୍ତ୍ୱର ବିକାଶ ହେତୁ ପ୍ରୟାସରତ ହେବା ଉଚିତ ।

(ପଣ୍ଡିତ ଶ୍ରୀରାମଶର୍ମା ଆଚାର୍ଯ୍ୟ)



# ୧୦୭. ଯଜ୍ଞ ତାତ୍ପର୍ଯ୍ୟ

ବୈଦିକ ସାହିତ୍ୟରେ ସର୍ବାଧିକ ମହତ୍ତ୍ୱ 'ଯଜ୍ଞ'କୁ ଦିଆଯାଇଛି । ଯଦି କୁହାଯାଏ କି ସମସ୍ତ ବୈଦିକ ସାହିତ୍ୟ 'ଯଜ୍ଞ'ରେ ଓତଃପ୍ରୋତ ଅଥବା ବେଦର ଆଧାର ହିଁ ଯଜ୍ଞ, ଏଥିରେ ଅତିଶୟୋକ୍ତି ନାହିଁ । ଯଜ୍ଞ ଶବ୍ଦ 'ଯଜ' ଧାତୁରୁ ସୃଷ୍ଟ । ଯାହାର ଅର୍ଥ ହେଉଛି ଦେବପୂଜା, ସଂଗତିକରଣ ଏବଂ ଦାନ । ନିଜଠାରୁ ଯିଏ ବଡ଼, ପୂଜ୍ୟ ତାଙ୍କ ସମ୍ମାନ କରିବା ଦେବପୂଜା । ସମାଜରେ ନ୍ୟାୟ ଏବଂ ସାମ୍ୟଭାବର ସ୍ଥାପନା କରି ସମସ୍ତଙ୍କୁ ଐକ୍ୟସୂତ୍ରରେ ବାନ୍ଧି ରଖିବା 'ସଂଗତିକରଣ' । ଯେ ନିଜଠାରୁ କନିଷ୍ଠ, ଅସମର୍ଥ ତାଙ୍କୁ କୌଣସି ପ୍ରକାରେ ସହାୟତା କରିବା ଦାନ । ଏହି ଛୋଟ-ବଡ଼ପଣ କେବଳ ମନୁଷ୍ୟଠାରେ ହିଁ ନାହିଁ ବୁଝିବା ଉଚିତ । ବରଂ ପାରଲୌକିକ ଜୀବନରେ ମଧ ଯାହାକିଛି ବି ପଦାର୍ଥ ଗୁଣ ବଡ଼ ରହିଛି, ମହାନ୍ ଅଛି, ତେବେ ସେ ହିଁ ପୂଜନୀୟ । ଏହିପରି ଯେ ସମଦର୍ଶୀ ସେ ମିଳନ (ସଂଗତି) ଯୋଗ୍ୟ । ଯେ ଛୋଟ ସେ କିଛି ପାଇବାର ଅଧିକାରୀ । ଯେପରି ଉକ୍ତ ତିନି ଶ୍ରେଣୀର ବ୍ୟକ୍ତି ପୂଜା, ସଂଗତି ବା ଦାନ ପାଇବାର ଅଧିକାରୀ । ସେହିପରି ଆମେ ଅନ୍ୟଦ୍ୱାରା ପୂଜା, ମିଳନ ତଥା ଦାନ ପାଇବାର ଅଧିକାରୀ । ଏହିପରି ସମଗ୍ର ଚେତନ ଏବଂ ଜଡ଼ ଜଗତରେ ସହଯୋଗ ଉତ୍ପନ୍ନ କରି ପରସ୍ପରର ଲାଭ ପହଞ୍ଚାଇବା ହିଁ ଯଜ୍ଞ ଏହି ତତ୍ତ୍ୱକୁ ବେଦରେ ଏହିପରି ଭାବେ ପ୍ରକଟ କରାଯାଇଛି ।

"ଅୟଂ ଯଜ୍ଞୋ ବିଶ୍ୱସ୍ୟ ଭୁବନସ୍ୟ ନାଭିଃ"

ଅର୍ଥାତ୍ "ଏହି ଯଜ୍ଞ ସଂପୂର୍ଣ୍ଣ ବ୍ରହ୍ମାଣ୍ଡର ନାଭି- ବାନ୍ଧିବା ତତ୍ତ୍ୱ । ବୈଦିକ ସାହିତ୍ୟରେ ଯଜ୍ଞର ଯେଉଁ ଅର୍ଥ ଦିଆଯାଇଛି ତାହା ଏହିପରି-

୧- ପରମାତ୍ମା ହେଉଛନ୍ତି ଯଜ୍ଞ, ୨- ଏହି ସଂସାର ହେଉଛି ଯଜ୍ଞ, ୩- ସଂଗଠିତ ମନୁଷ୍ୟ ସମୁଦାୟ ଯଜ୍ଞ, ୪- ମନୁଷ୍ୟ ଜୀବନ ହେଉଛି ଯଜ୍ଞ, ୫- ମନୁଷ୍ୟର ଶ୍ରେଷ୍ଠ କର୍ତ୍ତବ୍ୟ ମଧ ଯଜ୍ଞ ।



# ୧୦୮. ଅଗ୍ନିରୁ ଶିକ୍ଷା ତଥା ପ୍ରେରଣା

୧. ଅଗ୍ନିର ସ୍ୱଭାବ ହେଉଛି ଉଷ୍ଣତା । ଆମର ବିଚାର ଏବଂ କାର୍ଯ୍ୟରେ ତେଜସ୍ୱୀତା ରହିବା ଉଚିତ୍ ।

୨. ଅଗ୍ନିରେ ଯେଉଁ ବସ୍ତୁ ପଡ଼େ ତାକୁ ସେ ନିଜରୂପରେ ପରିଣତ କରିଦିଏ, ନିକଟବର୍ତ୍ତୀ ଲୋକଙ୍କୁ ନିଜଗୁଣ, ଜ୍ଞାନ ଏବଂ ସହଯୋଗ ଦେଇ ସେମାନଙ୍କୁ ନିଜ ଅନୁରୂପ କରିବାର ପ୍ରେରଣା, ପ୍ରଯତ୍ନ କର ।

୩. ଯେ ଯାବତ୍ ଅଗ୍ନି ଜଳୁଥାଏ, ସେ ଯାବତ୍ ଉଷ୍ଣତାକୁ ନଷ୍ଟ ହେବାକୁ ଦିଏନାହିଁ । ଆମେ ମଧ୍ୟ ଆତ୍ମବଳରେ ବ୍ରହ୍ମତେଜକୁ ମୃତ୍ୟୁକାଳ ପର୍ଯ୍ୟନ୍ତ ବଜାୟ ରଖିବା ।

୪. ଆମ ଦେହ ତ ଅଗ୍ନିରେ ଦିନେ ଭସ୍ମସାତ୍ ହେବ । ଏଣୁ ଜୀବନର ନଶ୍ୱରତାକୁ ବୁଝି ସଦା ସତ୍‌କର୍ମରେ ପ୍ରବୃତ୍ତ ହେବା ।

୫. ପ୍ରଥମେ ଅଗ୍ନି ନିଜ ଭିତରେ ଜ୍ୱଳନଶକ୍ତି ଧାରଣ କରେ ଏବଂ ପରେ ଅନ୍ୟ ବସ୍ତୁକୁ ଜାଳିବାରେ ସମର୍ଥ ହୁଏ । ଆମେ ପ୍ରଥମେ ସ୍ୱୟଂ ସେହି ଗୁଣକୁ ଧାରଣ କରିବା ଯାହାକୁ ପରେ ଅନ୍ୟକୁ ଦେଖାଇବା । ଉପଦେଶ ଦେଇ ନୁହେଁ ଆପଣା ଉଦାହରଣ ଉପସ୍ଥିତ କରି ଅନ୍ୟକୁ ଶିକ୍ଷାଦେଇ ପାରିବା ।

୬. ଅଗ୍ନି ଯେଉଁଠି ରହେ ଆଲୋକ ଉତ୍ସ ହୋଇଥାଏ । ଆମେ ମଧ୍ୟ ବ୍ରହ୍ମ ଅଗ୍ନିର ଉପାସକ ହୋଇ ଜ୍ଞାନାଲୋକ ଚତୁର୍ଦ୍ଦିଗକୁ ବିସ୍ତାର କରିବା ।

୭. ଅଗ୍ନିକୁ ଊର୍ଦ୍ଧ୍ୱମୁଖ କୁହାଯାଇଛି । ଶିଖା ସର୍ବଦା ଉପରକୁ ଉଠିଥାଏ, ଆମ ଭାବନା ବିଚାର କର୍ମ ମଧ୍ୟ ଊର୍ଦ୍ଧ୍ୱମୁଖୀ ହେବା ଉଚିତ ।

୮. ଅଗ୍ନିରେ ଯେଉଁ ବସ୍ତୁ ଦିଆଯାଏ ତାକୁ ସୂକ୍ଷ୍ମ ରୂପରେ ବାୟୁକୁ, ଦେବତାଙ୍କୁ ବାଣ୍ଟି ଦେଇଥାଏ । ଆମକୁ ଯେଉଁ ବସ୍ତୁ ଈଶ୍ୱରଙ୍କଠାରୁ ସଂସାରରୁ ପ୍ରାପ୍ତ ହୋଇଛି, ତାକୁ ଏତିକି ମାତ୍ର ଗ୍ରହଣକର, ଯେତିକିରେ ଜୀବନରୂପୀ ଅଗ୍ନିକୁ ଇନ୍ଧନ ପ୍ରାପ୍ତ ହୋଇପାରିବ ।





ସମୁଦ୍ର ମନ୍ଥନରୁ ବିଷ ବାହାରିଥିଲା, ବାହାରିଥିଲା ବି ଅମୃତ । ବିଷକୁ ସଂରକ୍ଷିତ କରି ରଖାଗଲା, ଅମୃତକୁ ଗ୍ରହଣ କରାଗଲା । ଏ ଖାଲି ଗପ ନଥିଲା, ଜୀବନପାଇଁ ସନ୍ଦେଶଟିଏ ହେଇ ରହିଗଲା ସବୁଦିନକୁ । ବିଷବଳୟର ପ୍ରତିକୂଳତା ଜୀବନରେ ରହିବ, ରହିବ ବି ତାହା ସହିତ ଅମୃତପାନର ଦିବ୍ୟମୁହୂର୍ତ୍ତ । ସେହି ଅମୃତର ଉତ୍ସଟି କାହାକୁ ଲାଗିବ ଅଦୃଶ୍ୟ ନିରବଚ୍ଛିନ୍ନ ଝରଟିଏପରି ତ ଆଉ କାହାକୁ ଅମୃତ ତଟିନୀପରି । ପ୍ରାଧ୍ୟାପକ ସୁଶାନ୍ତ କୁମାର ପଣ୍ଡାଙ୍କର ଏହି ନୂତନ ପ୍ରକାଶଟି ପାଠକମାନଙ୍କୁ ସେ ତନିଟୀର ଅମୃତୋଦକ ପାନ କରିବାର ସୁଯୋଗ ଦେବ ॥

- ପ୍ରକାଶକ

ଅମୃତ ତଟିନୀ

